ନାଟ୍ୟୋଲ୍ଲିଖିତ ବ୍ୟକ୍ତିମାନଙ୍କର ନାମ ।

## ପୁରୁଷ ।

| | |
|---|---|
| ବୈକୁଣ୍ଠ ମିଶ୍ର | ସ୍ୱାଧୀନଚେତା ବ୍ରାହ୍ମଣ । |
| ମାଧବ ମିଶ୍ର | ବୈକୁଣ୍ଠର ପୁତ୍ର । |
| ଗୋବିନ୍ଦ | ବୈକୁଣ୍ଠର ଭାଗିନେୟ । |
| ମଦନମୋହନ | ଗୋବିନ୍ଦର ସଙ୍ଗୀ । |
| କୃଷ୍ଣବିହାରୀ | ଅନନ୍ତ ଦାସର ଗୁମାସ୍ତା । |
| ହରେନ ପାଠପଥୀ, ଅମୃତ ଦତ୍ତ, ନୀଳକଣ୍ଠ ନାୟକ, ଅବଧାନ ମହାନ୍ତି | |
| ହରିହର ନ୍ୟାୟରତ୍ନ, ଗଦାଧର ବିଦ୍ୟାର୍ଣ୍ଣବ, ସଦାନନ୍ଦ ସ୍ମୃତିରତ୍ନ | ବୃଦ୍ଧ ପଣ୍ଡିତ । |
| ବ୍ରହ୍ମାନନ୍ଦ ସ୍ୱାମୀ | ଆର୍ଯ୍ୟଧର୍ମ-ପ୍ରଚାରକ । |
| ଭେଣ୍ଡା, ଷଣ୍ଡା | ଦୁଷ୍ଟ ଯୁବକ । |
| ଶ୍ୟାମ ପ୍ରଧାନ, ରାମ ସାହୁ | ଗ୍ରାମ୍ୟଲୋକ । |

ଶିକ୍ଷିତ ଯୁବକବୃନ୍ଦ, ବୃଦ୍ଧ ପଣ୍ଡିତବର୍ଗ, ଦୁଷ୍ଟ ଯୁବକବୃନ୍ଦ, ଗଞ୍ଜେଡ଼ୀ, ନବଚେଲା ଇତ୍ୟାଦି ।

## ସ୍ତ୍ରୀ ।

| | |
|---|---|
| ହେମମାଳୀ | ଅନନ୍ତ ଦାସର ସ୍ତ୍ରୀ । |
| ଲୀଳାବତୀ | ଅନନ୍ତ ଦାସର କନ୍ୟା । |
| ଚନ୍ଦ୍ରକଳା | କୃଷ୍ଣବିହାରୀର ସ୍ତ୍ରୀ । |
| ମାଳତୀ, ମାଧବୀ | ଲୀଳାବତୀର ସଖୀ । |
| ଚମ୍ପା | ଗାୟିକା । |
| ମଙ୍ଗଳୀ, ପାର୍ବ୍ବତୀ | ଦୁଷ୍ଟ ଯୁବତୀ । |
| ରୂପସୀ, ଜ୍ୟୋତ୍ସ୍ନା | ମେଥରାଣୀ । |

ମାଧବର ମାତା, ଦାସୀ ଗ୍ରାମ୍ୟଯୁବତୀବୃନ୍ଦ ଇତ୍ୟାଦି ।

# ପ୍ରଥମ ଅଭିନୟ ।

ପ୍ରଥମ ଦୃଶ୍ୟ । ଅନ୍ତଃପୁରସ୍ଥ ପ୍ରକୋଷ୍ଠ ।

[ ହେମମାଳୀ ଏକାକିନୀ ଆସୀନା । ]

ହେମ ।— ( ସ୍ୱଗତ ) ମୋର କପାଳଗୁଣରୁ ଏହା କୃଷ୍ଣଚନ୍ଦ୍ରଙ୍କ ପରି ଗୁମାସ୍ତାଟିଏ ମିଳିଛି ।—ଓହୋ ! ଏ କାଳ ପୁଣି ଏତେ ଅସତ୍ୟ ହେଲାଣି ଯାକୁ ପାଖକୁ ଆଉ ନେଇବ ସେ ଆଖି ବୁଜି ସର୍ବସ୍ୱ ଖାଇ ଘର ଶୂନ୍ୟ କରିଯିବ !— ଓଃ କେତେ ବଡ଼ ବଡ଼ ଘରକୁ ଏମାନେ ଶୂନ୍ୟ କରି ଦେଲେଣି ! ଆଗେ ଚାକରଗୁଡ଼ିକ ପୁରୁଣା ହେଲେ ବିଶ୍ୱାସୀ ହେଉଥିଲେ—ଏବେ ବେଶି ଧୂର୍ତ୍ତ ଆଉ ବାହାପିଆ ହୋଇ ଯାଉଛନ୍ତି । କୃଷ୍ଣଚନ୍ଦ୍ରଙ୍କ ଏହା ସମସ୍ତଙ୍କଠାରୁ ବାହାର !

[ ଦାସୀର ପ୍ରବେଶ ।

ଦାସୀ ।—ସାଆନ୍ତାଣୀ, ଗୁମାସ୍ତାଙ୍କୁ ଡକାଇଥିଲ—ସେ ଆସିଲେଣି ।

ହେମ ।— ଡାକିଆଣ ।

[ ଦାସୀର ପ୍ରସ୍ଥାନ ।

( ସ୍ୱଗତ ) ଯେତେବେଳେ ଡକାଇବ ଖାଇଲା ଘରରୁ ଘର ଉଠି [illegible]ବି—ଜଗନ୍ନାଥଙ୍କ ଗୋରୁ ଘର ବଛୁ ଓଳିର ନାହିଁ ।

[ ବସ୍ତାନି ସହିତ କୃଷ୍ଣଚନ୍ଦ୍ରଙ୍କ ପ୍ରବେଶ ।

ଆସ, [illegible] ଆସିଲ ?—ସେଇଠି ବସ ।

କୃଷ୍ଣ ।— ହଁ ମା, ହିସା[illegible] ଆଣିଛି । ( ତଳେ ଉପବେଶନପୂର୍ବକ ହିସାବବସ୍ତା ଫିଟାଇ ) କାଲି ମୋଟ [illegible]ବାକୁ କହିଥିଲ—ଜାଇଦାଦ୍ ନଗଦ ତହବିଲ ମୋଟ ହେଲା ଦଶଲକ୍ଷ ଟଙ୍କା [illegible] ସାତଲକ୍ଷ ଯାହା ଋଣ ଦିଆଯାଇଛି ତାହା ସୁଧ ସହିତ ଆଦାୟ ହେବ ଏ[illegible]ଲକ୍ଷ ।

ହେମ ।— ସେଥିରୁ କିଛି ବୁଡ଼ିବ ନାହିଁ ?

କୃଷ୍ଣ ।— ( ଜିହ୍ୱାଦଂଶନପୂର୍ବକ ) ଏ ଘରର ଲୁଣ ଖାଇ ମୁଁ ବୁଢ଼ା ହେଲିଣି— ଏମନ୍ତ ବନ୍ଦୋବସ୍ତ କରିଛି ଯେ ପାହୁଲାଟିଏ ବୁଡ଼ିଯିବ !

ହେମ ।— ଭଲ, ମୁଁ ତା ଉତ୍ତମରୂପେ ଜାଣେ ।—ଆଉ ଧାନ ?

କୃଷ୍ଣ ।— ( ବସ୍ତା ଦେଖି ) ଭିନ୍ନ ଭିନ୍ନ ସ୍ଥାନର ଅମାରରେ ଦଶହଜାର ଭରଣ ଧାନ ଜମା ଅଛି । ଦାଦନ ଦିଆ ଯାଇଥିବା ଧାନ ଏ ମାସ ଶେଷ ସୁଦ୍ଧା ପଚାଶ ହଜାର ଭରଣ ଆଦାୟ ହେବ । ଏବର୍ଷ ଫସଲ ଷୋଳଅଣା ।

ହେମ ।— ଭଲ, ଅସୁଲ କରିବା ସକାଶେ ଧାନକାଗଜ ଠିକ ରଖିଛ ତ ? ମଗୁଶିର
ମାସ ପୂରିବାକୁ ଆଉ ଚାରିଦିନ ଅଛି, ତହିଁ ଉତ୍ତାରୁ ପୁଣ ଗଲେ ମାଘ ।

ଲୁଞ୍ଜ ।— ମା, ତୁମ୍ଭର ଅନ୍ନ ଖାଇ ଏ ଦାସ କାର୍ଯ୍ୟରେ କେବେ ହେଳା କରି ନା
କ କରିବ ନାହିଁ । ( ଖଣ୍ଡିଏ ବହି ଉଠାଇ ଦେଖାଇ ) ଏଥିରେ ଯେଉଁ
ମଉଜାର ଯେଉଁ ଲୋକ ଯେତେ ଦାଦନ ନେଇଛି ଓ ହାଲ ସାଲକ
ହୋଇ ମାଘ ମାସରେ ଯେତେ ହେବ ସବୁ ଲେଖା ହୋଇଛି ।

ହେମ ।— ଆଚ୍ଛା ଗୁମାସ୍ତାଏ, ଯେବେ ଧାନ ଅଛି ଅକାଳ ପଡିଲେ ତୁମେ ଦେଶଯାକ
ଲୋକଙ୍କୁ ଚାରିମାସ ଚଳେଇ ପାରିବଟି ତ ?

ଲୁଞ୍ଜ ।— ଈଶ୍ୱର ନ କରନ୍ତୁ ମାଁ ସେଯାଏ ଗଲେ କାମ ଉଠିଯିବ ?

ହେମ ।— ଈଶ୍ୱର ନ କରନ୍ତୁ ଏହା ସମସ୍ତଙ୍କ ଇଚ୍ଛା ମାତ୍ର ମଙ୍ଗଳମୟ ଭଗବା
ଲୋକଶିକ୍ଷା ପାଇଁ କେତେବେଳେ କଅଁଣ ଭିଆଇ ବସନ୍ତି ତାଏ କ
ପାରିବ ! ସବୁବେଳେ ଆପଦ ବିପଦ ପାଇଁ ପ୍ରସ୍ତୁତ ହୋଇ ରହ
ଉଚିତ ।—ଦେଖ ଗୁମାସ୍ତାଏ, ସାହେବମାନେ କେମନ୍ତ ଆଗପଛ
ସବୁ କଥାକୁ ତିଆର ହୋଇ ରହିଥାନ୍ତି !

ଲୁଞ୍ଜ ।— ଯାହା ଆଜ୍ଞା ହେଲା ମା, ତାହା ଯଥାର୍ଥ । ଆମର କେମେଲେଷ୍ଟର ସା
ଆଜି ଆସି ଆର ଗ୍ରାମ ମୁଣ୍ଡରେ ଛାଉଣୀ ପକାଇବେ ।—ପ
ଆସିଛି—ରସଦ ଯୋଗାଡ଼ କରିବାକୁ ହେବ ।

ହେମ ।— ସେଥିରେ ଆଉ କଥା ଅଛି ?—ଆମର ଯେପରି ଚଳ ଆସୁଛ
ତେବରୁ ଖଣ୍ଡହୂର ଛଡ଼ାରେ ହାଣ୍ଡି, କାଠ, ଚାଉଳ, ଡାଲି, ପନ
ଘିଅ, ତେଲ, ଲୁଣ ସବୁର ଦୋକାନ ବସେଇ ଦିଅ । ମାଛ
କାହାରିଠାରୁ ପଇସାଟିଏ ନବ ନାହିଁ । ଗରିବ ଅମଲା ତପସ୍ୱ
ସୁରପଇସା ପେଟକୁ ଖାଇଗଲେ ପାଣିରେ ପଡ଼ିବ ନାହିଁ ।

ଲୁଞ୍ଜ ।— ଛଦ୍ୟ ବରାବର ସେହିପରି କରି ଆସୁଛି ମା । ଦୁଇ ତିନଟା
ଆଗରେ ପଇସା ଅଧଲା ହୋଇଣି ଯୁଦ୍ଧ ଭର୍ତ୍ତି ହୋଇ ରଖାଯା
ସାହେବ ବେଳେବେଳେ ତଦାରଖ କରିବାକୁ ଆସିଲେ ମି
... ଟା ନେଏ ଆଉ ଏ ପଇସା ଥାଉ ଦେଖେଇ ଦଆଯାଏ ।

ଭଗବାନ ଆମକୁ ସୁଉପଇଷା ଦେଇଛନ୍ତି, ତାଙ୍କୁ ପେଟପୂରେଇ ଦନ ନେଭୁଟା ଖୁଆଇଲେ ଆମର କଛୁ ସରଯିବ ନାହ ।—ସାହେବ କେତେଦନ ରହବେ ?

ଲୁଞ୍ଚ ।— ସୁଉଦନ ।

ଦେମ ।— ନାହିଁକ.? ଏବକାଳର ସାହେବମାନେ ତ ଏ ଓଳ ଅସିଲେ ସେ ଓଳ ଗୁଲିଯାଉଥିଲେ—ଏ ସାହେବ ସୁଉଦନ ରହବେ ଯେ ?

ଲୁଞ୍ଚ ।— ଏବେ ଉପରୁ ଗ୍ରମ ହମି ଅସିଛୁ । ଆଗେ ସାହେବମାନେ ଗାଁକୁ ଗସ୍ତ କରିବାକୁ ଆସି ଘୋଡ଼ା ଝପଟାଇ ଗୁଲିଯାଉଥିଲେ, ଏବେ ଲାଟସାହେବ ଭାରି କଡ଼ା ହୁକୁମ ଦେଇଛନ୍ତି ଯେ ଗ୍ରାମ ଗ୍ରାମ ବୁଲି ଲୋକଙ୍କସଙ୍ଗେ ମିଶି ତାଙ୍କ ହାଲଗୁଲ ସବୁ ଦେଖି ଯେପର ସେମାନେ ସୁଖରେ ରହବେ ତହିଁର ବ୍ୟବସ୍ଥା କରିବାକୁ ହେବ । ଏ ମେଜେଷ୍ଟ୍ରର ସାହେବଟି ମଧ ବଡ଼ ଭଲ ହାକମ—ଓଡ଼ିଆ କହିବାରେ ତାଙ୍କର ପାଟି ଅଟେଁ ଲାଗୁ ନାହ । କ ଗରିବ, କ ଭାଲବର, କ ପିଲା, କ ବୁଢ଼ା, ସମସ୍ତଙ୍କ ସଙ୍ଗେ ସମାନ ଭାବରେ ମିଶି କଥା ବାର୍ତ୍ତା କରି ଘରକରଣାଠାରୁ ବେଲାର-ବଣିକଯାଏ ସବୁ ବୁଝି ନେଉଛନ୍ତି ।

ମ ।— ଭଲ ।—ଏ ଭଳ ହାକମ ଆଗେ ଗାଁକୁ ଅସିବା ଶୁଣାଥିଲା । ଯାହାହେଉ ଭଧଦରେ ଯେପର ଝୁଣ୍ଟି ନ ହୁଏ ଧ୍ୟେଥିକ ଆଖି ରଖିବ ।—ଲୀଳା ଅଇଲଣି ? ( ଉଚ୍ଚସ୍ୱରେ ) ଲେ ଲୀଳା—ଲୀଳା ଲେ ?

[ ଦାସୀର ପ୍ରବେଶ ।

।— ଆସି ଜାହାନ୍ତି—ମୁଁ ଭାତ ଦଉଛ । ( ପ୍ରସ୍ଥାନ । )

।— ବୈଷ୍ଣବ ମିଶ୍ରଙ୍କ ଘରେ ମୁ ଅଇଲାବେଳେ ଦେଖି ଅସିଲ ପଢ଼ୁଥିଲେ—ପଢ଼ିବାରେ ତାଙ୍କର ଭାରି ଶରଧା । ମାତ୍ର ଗୋଟିଏ କଥା ଅଛୁ :—ବୈଷ୍ଣବଙ୍କ ସାନ ଭଉଣୀର ପୁଅ ଗୋବନ୍ଦ ଭାରି ମୂର୍ଖ ହେଣ୍ଡା—ମୁ ତାକୁ ମନ ଭାବରେ ଲୀଳା ଉପରେ ଅଖି ପକାଇବାର ଦେଖିଛୁ । ଅଜ ପାନ ମାଗିଲାକୁ ଲୀଳା ଉଠି ଯେମତ ପାନ ଦେଲା ସେମତ ସେ ଟୋକା ମୁରୁକେଇ ହସି ଲୀଳା ହାତରୁ ୯ଟି ଭଣ ପାନ ...

ଥାଏଁ—ସେ ମୋତେ ଦେଖି ନାହିଁ, ମାତ୍ର ତା ମୁହଁରେ କିଛି ବିରକ୍ତି ଦେଖାଗଲା ନାହିଁ । ତା ଭଙ୍ଗୀ, ତା ଠାଣି ଯେମନ୍ତ ସରଳରୁ ତେମନ୍ତ ଥିଲା ।

[ ପୁସ୍ତକ ହସ୍ତେ ଲୀଳାବତୀର ପ୍ରବେଶ ।

ଲୀଳା ।— କାହିଁକି ଡାକିଲୁ ବୋଉ ?

ହେମ ।— ସେ କି କିତାପ ?

ଲୀଳା ।— ଇଂରେଜୀ ଫରାସି-ଇତିହାସ ପୁସ୍ତକ—ଏମନ୍ତ ସୁନ୍ଦର ଲେଖା ଯେ ମୁଁ ଅଧ୍ୟାୟଟା ଶେଷ ନ କରି ଛାଡ଼ି ପାରିଲି ନାହିଁ । ନନା ବି ପଢ଼ାଇ ନ ପାରି ଛାଡ଼ିଲେ ନାହିଁ ।

ହେମ ।— ଗୋବିନ୍ଦ କାହିଁକି ଆସିଥିଲା ?

ଲୀଳା ।— ସେଟା ସେମିତି; କିଛି ପଢ଼ିବାକୁ ବେଳେ ଆସେ—ବସି ବସି ମନରୁ ଚାଲିଯାଏ ।

ହେମ ।— ତୁ ତାକୁ ପାନ ଦେଲୁ କାହିଁକି ?

ଲୀଳା ।— କିଏ କହିଲା ?

ହେମ ।— ଗୁମାସ୍ତାଏ କହୁଥିଲେ ସେ ମୁରୁକେଇ ମୁରୁକେଇ ହସି ତୋ ହାତ[...] ଝପ କରି ପାନ ନେଇ ଖାଇଦେଲା । ଏ କଥା ମିଛ ?

ଲୀଳା ।—( କାନ୍ଦୁ ) ବୋଉ, ସେ ବସେ ବୋଲି ବିରକ୍ତ ହୋଇ [...] କହିଥିଲେ ଆଜ ତାକୁ ମନା କରିଦେବେ । ସେ ଯେମିତି ଆସିଲା [...] ମାଗିଲା । ନନା ତାକୁ ପାନ ଦେବାକୁ କହିଦେଲେ — ମୁଁ ପାନ ଦେ[...] ସେ ନେଇକରି ଚାଲିଗଲା ।— ମୋର କିଛି ବେଆଡ଼ା କଥା ଦେଖିଛ, କହ ।

ହେମ ।—( ହାତ ଧରି ଲୀଳାକୁ ପାଖରେ ବସାଇ ଲୁହ ପୋଛି ) ଲୀ[...] ମୋ ମାଟା ପଗ—କାନ୍ଦନା ! ଗୁମାସ୍ତାଏ ତୋର କିଛି ଭଙ୍ଗୀ ନାହାନ୍ତି ବୋଲି କହିବାରୁ ମୁଁ ଖୁସି ଥିଲି—ତୋ ମନକଥା ଜାଣି[...] ତାଙ୍କର ଆଗରେ ତୋତେ ଏକଥା ପଚାରିଲି । ବୈଷ୍ଣବନନା ତୋ[...] [...]ଙ୍କ ହାତରେ ଅପଣା ପୁଅକୁ ହଜାଇ ପଠାଇଛନ୍ତି

ଭସ୍ମେଇଦେଇ ସ୍ୱର୍ଗକୁ ଗୁଳିଗଲେ । ମୋର କପାଳ ଏମନ୍ତ ପୋଡ଼ା ଯେ ପିଲାଟିଦିନୁଁ ମୋ କପାଳ ଫାଟିଲା—ଶାଶୁଘର ଦେଖିଲି ନାହିଁ । ମୋ କପାଳକୁ ତୁ ଗୋଟିଏ ବୋଲି ଝିଅ—ଏବେ ଧନ ସମ୍ପତ୍ତି ମୋର । ବୈଷ୍ଣବନନ୍ଦଙ୍କ ଘରକୁ ତୁ ଯିବାର ଦେଖିଲେ ବ୍ରାହ୍ମଣେ ମୋତେ ଅଟକ କରିବେ, ଏଥିପାଇଁ ମୁ କେତେ ଡର ଡର ହେଉଛି । ଯାହାର ପାଠ ଶାଠ ନାହିଁ ସେ ସଂସାରରେ ଅନ୍ଧ—ସେଥିପାଇଁ ମୁ ତତେ ପାଠ ପଢ଼ାଉଛି । ତୋର ବ ପାଠ ନ ପଢ଼ି ଆଉ କ ଗଢ଼ ଅଛୁ—ଏବେ ଅଟମ୍ଭର ସମ୍ଭାଳବୁ ବା କପର ? ଜନାକୁ ମଜା କରିବହି ସେ ଆଉ ଏଭଳି ଟୋକାକୁ ଭାଙ୍ଗ ଘର ମଡ଼ାଇ ଦେବେ ନାହିଁ ।— ( କୁଞ୍ଜବିହାର ପ୍ରତି ) କୁମାସ୍ୱାଏ, ଭୁମ୍ଭେ ଗଲବେଳକୁ ବୈଷ୍ଣବଙ୍କ ଘରବାଟେ କହି ଯିବ । ଯାଅ, ଉଚ୍ଛୁର ହେଲାଣି—ଯାଉଛି ମୁ ଲୀଲାକୁ ଶୁଆଇଁ ।

[ ବସ୍ତାନ ବାନ୍ଧ କୁଞ୍ଜବିହାରୀର ଓ ଲୀଲାର ହାତ ଧରି
ହେମମାଳୀର ପ୍ରସ୍ଥାନ ।

ପଟ ପରିବର୍ତ୍ତନ ।

———*———

ଦ୍ୱିତୀୟ ଦୃଶ୍ୟ ।

ବିଦ୍ୟାଳୟ ସମ୍ମୁଖ ।

[ ମଧ୍ୟସ୍ଥଳରେ ମେଜ ଓ ଚଉକିରେ ଚୌକୀ ସୁସଜ୍ଜିତ ଓ ବୀରେନ୍ଦ୍ର, ଗୋଲ-
କଣ୍ଠ, ଅଦଜନ, ଅଗସ୍ତ୍ୟ ପ୍ରଭୃତି ଯୁବକବୃନ୍ଦ ଆସୀନ ]

ରେ ।— ଅବିଦ୍ୟା ଅକଥା ହେଲୁ ଉତ୍କଳ-ଗୌରବ
ଯିବାକୁ ବସିଛି, ଯେବେ ମରହଟି ବୁଢ଼ା
ଅଶାକ୍ଷୀସ୍ତୁ କଥା ସେନ ଏଡ଼ିଲା ହଟିଅ ,
ବୁଝାଇଲେ ଯେବେ କେବେ ବୁଝିବେ ସେ ନାହିଁ ।—
ସିନ୍ଧୁପାର ହେଲେ ଯିବ ଜାତଟା ସଲଣେ
ଯେବେ ଜ୍ଞାନ ଅର୍ଜ୍ଜ ଯେବେ ତୁଅ ନା ପଣ୍ଡିତ—
ଏ ଭଳି ଯା ମତ ତାଙ୍କ ନିକଟ୍ର [illegible]

ନଡ୍ଡାନର ମୂଲ୍ୟ ଗାର ରହେ ଅବଶେଷେ—
ବାଲ ଧାନଫୁଟା ଯାହା ଲୋକ-ରଞ୍ଜବାଇ ।
ଅଦ ।— ଯଥାର୍ଥ ଏକଥା, ପଢ଼ି ମିଥ୍ୟାଶାସ୍ତ୍ରମେଷ୍ଠା
ଭୁଲବେ ଦାଣ୍ଡରେ ଲମ୍ବଲୁଷ ଶାଲଗୋଡ଼େ
ଶିରେ କାଟି ଜଣା ମିଥ୍ୟା ଧ୍ୟାନ ଦ୍ୱାଲୁଛି
ଦେଶର ଲୋକଙ୍କୁ ଜଡ଼ା କାଟିବାଲୁ ସଦା ।
ନ ଗୋଚଲେ ଏ ମାନଙ୍କୁ ଯିବ ରସାତଳେ
ସ୍ୱରଗ ସମ ନ ଜନ୍ମଭୂମି ମାତୃଦେଶ ।
ଅଷ ।— ବିଦ୍ୟାର ଗୌରବ କୁଡ଼ି ପଣ୍ଡିତ ପଣିଆ
ଆବଦ୍ଧ ଯେସନ ସେହି ଶାସ୍ତ୍ରପଢ଼ା ଠାରେ;—
ସିନ୍ଧୁ ପାର ହୋଇ ଯେବେ ହୋଇବ-ଡ ଏସ୍ ସି
ଅଥବା ପି ଏଚ୍ ଡି ଅବା ଆଇ ଏମ୍ ଏସ୍ ସି ଏସ୍
ତଥାପି ଅସ୍ପୃଶ୍ୟ ମ୍ଲେଚ୍ଛ ଚଣ୍ଡାଳ ସମାନ—
କର ପ୍ରାୟଶ୍ଚିତ୍ତ ଯେତେ କରନ୍ତୁ କୁକର୍ମ ।
ଶାଳ ।— ଭାଙ୍ଗିବାକୁ ନେବ ଏହା ଦୃଢ଼ପଣ କର
ଜର୍ଦ୍ଦମ୍ଭ ଅନ୍ତରେ — ବେଦେ ଅଛୁ ମନ୍ତ୍ର ଲେଖା—
ମାଦେର୍ମା ଫଳକଥା କେବେ କୁହ ବରଲଭ
ଅଥବା ଶର୍ଣ୍ଣର ସନ୍ଧ୍ୟମ ନର୍ଗେ ଯିବା ପାଇଁ ।
ବିଦ୍ୟାଧନ ଅର୍ଜି ନଜ ଉନ୍ନତି ଲୋଡ଼ିବା
ଅଥବା ଆପଣା ଜାତି ଦେଶର ଗୌରବ
ବଢ଼ାଇବା ନିମନ୍ତେ କେବେ ପାଷଣ୍ଡ ଲକ୍ଷଣ—
ପାଷଣ୍ଡ ଅଟଇ ବେଦ-ବିରୁଦ୍ଧ-ଆଗ୍ରହୀ ।
ଯେ ବେଦେ ଅର୍ଣ୍ଣବଯାନ ଆକାଶ-ବିମାନ
ଲୌହବର୍ତ୍ମ ରେଳପଥ ଅଛଇ ବହୁତ,
ଯହିଁରେ ବଣିକ ଯାଇ ଦେଶ ଦେଶାନ୍ତର
ଲକ୍ଷ୍ମୀ ଉପାସନା କରି ମହାବିଦ୍ୟାବଳେ
ଅତୁଲ ଐଶ୍ୱର୍ଯ୍ୟ ଅବା ସାମ୍ରାଜ୍ୟ ଅର୍ଜିବା
ଅଛି ଲେଖା ବାରମ୍ବାର, ସେ ବେଦ ଉପେକ୍ଷି
ମନ୍ତ୍ରପୂଜା ସେନ କୂପ-ମଣ୍ଡୁକ ଆକାରେ,
ଅଥବା ସେ ନେନପର ଶାରୁପର୍ଣ୍ଣ ବଲେ

ଆପଣାଙ୍କୁ ବଡ଼ କରି ବଡ଼ାଇ କରିବା
ନ ଶୋଭେ ଏକାଳେ–ଏହି ବିଷୟବାଦୀରେ ।
ଦେଖନ୍ତୁ ଇଂରାଜେ ବିଦ୍ୟା–ବାଣିଜ୍ୟ–ବଳରେ
ଯାଉଛୋଇ ସୁପ୍ରସିଦ୍ଧ ଗୌରବୀ ହେଲେ
ଅଶାନ୍ତ ଭାରତ—ସ୍ୱର୍ଗ ସମାନ ଜଗତେ—
କଳ୍ପେ କରଗତ, କେବେ ପଣ୍ଡିତ ଶାସ୍ତ୍ରୀଏ
ବହିବାକୁ ଉପାନତ ଯୋଗ୍ୟ ନବା ଥିଲେ ।
[ ବିଶ୍ୱମ୍ଭରର ପ୍ରବେଶ ।

ବିଶ୍ୱ ।— ( କ୍ରୋଧଭରେ ) ବହନ୍ତୁ ପାଦୁକା ତବ ଫିରିଙ୍ଗିରାମହେ
ମ୍ଲେଚ୍ଛ ଜାତିଙ୍କର, ନୁହେ ବ୍ରାହ୍ମଣର କାର୍ଯ୍ୟ ।
ପଢ଼ି ପାଠ ଏ ବ ସି ତ ପଲବାକ୍ସ ଏଠି
ଦେଖୋଦ୍ୱାରେ ବସିଛନ୍ତି କୁଳାଙ୍ଗାରେ ଯେତେ । ( ଶତ୍ରିଏ-
ଙ୍କେ ବରେ ଉପବେଶନ । )

ମାଲ ।— ( କ୍ରୋଧଭରେ ) ସମ୍ଭାଲ ଭାଷିବେ ତାହୁ ତାହୁ ମହାଶୟ,
ଏ ନୁହେ ବଙ୍ଗାରହ ଟ—ପଢ଼ା ସବୁଙ୍କର ।
ବିଦ୍ୟା ପଢ଼ି ଦେଖୋଦ୍ୱାର ଅଛଇ ଭାରତରେ ।
ପଢ଼ି ପାଠ ଧରି ଅଙ୍କୁ ଦେଖୋଦ୍ୱାର ବ୍ରତ
ଜଞ୍ଜାଳ ଯେତକ ସବୁ କରିବୁଁ ନିର୍ମୂଳ ।
ନୁହେ ଦେଖୋଦ୍ୱାର ଖାଲି ଶିକ୍ଷା ଛଡ଼ା ଯେତେ—
ଅଧର୍ମ ଅଶାସ୍ତ୍ର କଥା ଅଛୁ କି ସ୍ମୃତିରେ ?

ବିଶ୍ୱ ।— ସ୍ମୃତି ନିନ୍ଦା କର—ତୁମ୍ଭେ ଯିବ ଅଧଃପାତେ—
ତାହିଁ ଲାଗେ ସୁଧାପାନ ସ୍ମୃତି-ନିର୍ଝରରୁ ।
କରୁଛ ମୂ ମନା, ଶୁଣ ବୃଦ୍ଧର ବଚନ—
ଦେଶପ୍ରଥା ବିପକ୍ଷରେ ନ ଚଳ କେବେହେଁ;
ବୁଝିଥାଅ କଥା ଲୋକେ ପ୍ରଚଳିତ ଯାହା—
ଯଦ୍ୟପି ଶିଷ୍ଟଂ ଲୋକ ବିରୁଦ୍ଧଂ
ନାଦରଣୀୟଂ ନାଚରଣୀୟମ୍ ।

ଅଛ ।— ସେ ସବୁ ପୁରୁଣାପାଠ ରଖ ତୋର ଦେଇ
ବିଷୟବାଦୀଙ୍କ ଯୋଗ୍ୟ ନୁହେ ଏକ୍କା କଥା;
ଏକାଳେ ଲୁବାସା-ଶାପ ସମ୍ପୂର୍ଣ୍ଣ ଅଚଳ—

ସଫଳ ଅଟଇ ଏହା ଜ୍ଞାନ-ଯୁକ୍ତି-ଯାଗ ।
ସାଧିବ ହିନ୍ଦୁର ଯାଇ ହେବ ଜାତି-ଚ୍ୟୁତ
ପିତାମାତା ସହ, ଅଛୁ ଏ ଯେଉଁ ଶାସ୍ତ୍ରରେ
ଯୋଡ଼ିଦେଇ ଅସ ଏବେ ଉଲ୍ଲଙ୍ଘମାନଙ୍କୁ ।

ଅତ ।— ଦେଶ ଦେଶାନ୍ତରେ ଲକ୍ଷ୍ମୀ-ସରସ୍ୱତୀ-ସେବା—
ନାହି ଭଲ କାର୍ଯ୍ୟ ବନ୍ଧୁ ;-କ ହେତୁ ତହିଁରେ
ବାଧା ପକ୍ଷୁଆଇ ଦେଶେ କଥାଅ କଳଙ୍କ ?—
ଆପଣା ଯୋଗ୍ୟତା-ମୂଳେ କ ମାର କୁଠାର ।
ବେଦରେ ବହୁତ ତାହା ପ୍ରମାଣ ପୁରାଣେ—
ସମସ୍ତ-ସ୍ରୋତରେ ପୁଣି ହୋଇଛୁ ତା ଯୋଡ଼ା ।

ଜୟ ।— ଦେଶାନ୍ତରେ ବିଦ୍ୟାଧନ ଅର୍ଜ୍ଜନ ସନ୍ଧାନେ
ଅଛୁ ପାପ ଗମନରେ—ଅର୍ଣ୍ଣବଯାନରେ
ଜାତି ଯିବ ଆଗେ ମ୍ଳେଚ୍ଛମେଳେ ଖାଦ୍ୟ ଖାଇ ।

ଗତେ ।— ବ୍ରାହ୍ମଣ ଚଣ୍ଡାଲ ବସି ଏକଇ ନାବରେ
ହେଉଛନ୍ତି ପାର, ଜାତି ଯାଉଛି କେଉଁଠା ?—
ଖାଇଲେ ତହିଁରେ ନିଜ ପ୍ରାଣରକ୍ଷା ପାଇଁ
ହେବ ନାହି ଜାତିରକ୍ଷା—କେଉଁ ଦେଶ ପାଠ ?

ଜୟ ।—( ଉଚ୍ଚୈଃସ୍ୱରେ ) ଅତୃଷ୍ଣା ଟୋକାଙ୍କ ମେଳେ ବୃଥାର ତରକ
ବକ୍ତୃତ୍ୱ କଠିନ ବୁଝା;—ଅଖାଦ୍ୟ-ଭୋଜନ
ଜାତି ନାଶ ମୂଳ, କରେ କଳୁଷିତ ସଦା
ପବିତ୍ର ଶୋଣିତ ଯାହା ଆର୍ଯ୍ୟ ଧମନୀରେ
ବହେ ନିରନ୍ତର ।

ଶୀଳ ।— ଏବେ ଆସିଲ ବାଟକୁ,
ଖାଦ୍ୟ କହ ଅଛୁ ତାର କେବଣ ପ୍ରମାଣ ?
ଯୁକ୍ତି ଧରି କର କାର୍ଯ୍ୟ, ପିତାମହ ସମ
ଖାଇବ ସମ୍ମାନ୍ୟ-ମାଂସ ସିନ୍ଧୁ ପାରହେଲେ
ଯିବ ଜାତି ଏକାବେଳେ, ଏଡ଼େ ଟାଣ କଥା
ଆପଣା ମହତ୍ତ୍ୱ କେଉ ପକାଇବ ତଳେ ।
ଦୋକାନପାଠକବୃନ୍ଦ କେଉଁକାଳେ ଥିଲେ

ବ୍ରାହ୍ମଣ ମଧ୍ୟରେ ? କେବେ ସୁଦ୍ଧ ପରଦାର
ଧର ଜାତିଚ୍ୟୁତି ଦଣ୍ଡେ ଦେଇଛ ବ୍ୟବସ୍ଥା ?
ବ୍ୟବସ୍ଥା-ଦୋଷରେ ସୃଷ୍ଟି ସଙ୍କର ଜାତିରେ
ବ୍ରାହ୍ମଣେ କରନ୍ତି କାର୍ଯ୍ୟ, ବେଶ୍ୟାନ୍ନ ଭୋଜନ,—
ଏ ସବୁ କହଇ ପାପ !-ତାହାକେ ରଚିଲେ
ହେବ ଜ୍ଞାନଲାଭ କାଟି ଅଜ୍ଞାନ ତିମିର,
ସେ ବଡ଼ ଅଦ୍ଭୁତ—ପରଶିଷ୍ୟ-କାତରତା !
ଭଣ୍ଡ ।—( କ୍ରୋଧେ ମେଜରେ ହାତ ମାରି ) ସାଧେଁ ପଣ୍ଡିତ ତାର ପିତା, ଜାତିଭ୍ରଷ୍ଟେ;
ଦେଲେ ଦେଲେ ବଳେ ବଳେ ଯାଉଛ ତା ଘର,
ଜାତିଭ୍ରଷ୍ଟ ହେବ ତୁମ୍ଭେ—ଭାବଇ ମୁଁ ସତ୍ୟ
ବ୍ରାହ୍ମଣ ପଣ୍ଡିତଙ୍କର ।—ଛାଡ଼ିଛ ସକଳେ
ଶିକ୍ଷା ତଥା ଜାତିଧର୍ମ, ରଖୁଅଛ ନଷ,
କରଇବ ପ୍ରାୟଶ୍ଚିତ୍ତ ଏକ ଏକ କରି
ନୋହିଲେ ନ ଥିବ ନାମ ସ୍ୱାର୍ଥ ଶିଷ୍ୟବର ।
ଅଦ ।—( ମେଜରେ ବଳରେ ମାରି ) ଏତେ ବଡ଼ କଥା—ଅହୋ ସ୍ୱାର୍ଥ ଚୂଡ଼ାମଣି !
ଦ୍ୱେଷୀ ଶିଖାଇ ଦେଶ-ଉନ୍ନତି ମାର୍ଗର ! ( ତତ୍କାଳ ଭଣ୍ଡ-
ମୁଣ୍ଡର ପଛଆଡ଼ୁଁ କଇଁଚିରେ ଶିଖା କାଟିନେଇ ଆଗକୁ ଆସି)
କୁସଂସ୍କାର-ଦାସତ୍ୱର ଲକ୍ଷଣ କେବଳ
ଆଜଠାରୁ ସ୍ୱାର୍ଥଶିଖାପତନ ଏଠାରେ । ( ଶିଖା ପକାଇଦେବା)
ଭଣ୍ଡ ।—( ଅତିକ୍ରୋଧେ ଆସନୁଁ ଉଠି )ପାଷଣ୍ଡ ! ନିର୍ବୋଧ ! ଏତେ ଅଶିଷ୍ଟ ଆସ୍ପର୍ଦ୍ଧା !
ପଢ଼ି ପାଠ ଗାଡ଼ି ଗାଡ଼ି ବୁଦ୍ଧିର ଲକ୍ଷଣ
ସଭ୍ୟସ୍ଥଳେ ! ଅଛି କି ତା ଇଂରାଜୀ ପାଠରେ ?—
ରହିବା ଏ ସ୍ଥାନେ ଆଉ ନୁହଇ ଉଚିତ । ( ଗମନୋଦ୍ୟତ )
ଅଦ ।— ଯାଅ ନିଜ ମାନ ନେଇ ରହିଲେ ଆହୁରି
ଅଛି ଅପମାନ !—ସତ୍ୟ ଶାସ୍ତ୍ର ଛାଡ଼ି କେବେ
କେ ନଷ ରଖିଲା କେଉଁ ଛୁଟିଲା ବାଟରେ
ଏ ନେଇ ବୋଲାଏ ଯେଉଁ ପଣ୍ଡିତ ମନକୁ
ନାହିଁ ଅପଦାର୍ଥ ଆଉ ଜଗତେ ତାଠାରୁ ।
ଭଣ୍ଡ ।— ( ଅତି କ୍ରୋଧେ ) ସିନ୍ଧୁ ଅଧଃପାତେ ତୁହି ଅତି କୁଳାଙ୍ଗାର !

ପିତୃପିତାମହଙ୍କର କୁଳକ୍ଷୟ ପାଇଁ
ସୋଡ଼ାମୁହାଁ ପୁଏ ଏବେ ହେଲ ରେ ଜନମ ! ( ପ୍ରସ୍ଥାନ )

ଆଚ ।— (ହସ୍ତହସ୍ତ) ଗଲା ପାପ; ଦେଖିଲତ ଅବୁଝା ଲୋକଙ୍କୁ -
ସ୍ୱଯୁକ୍ତି ଦେଖାଇ କେବେ ନ ପାରିବ ଯୁଝି ।
ମୂର୍ଖଙ୍କୁ ବୁଝାଏ ଠେଙ୍ଗା ପଣ୍ଡିତେ କହନ୍ତି,
ସେ ନ୍ୟାୟ ଅଟଳ ଏଠି— ପଣ୍ଡିତ-ମୂର୍ଖରେ !—

ଅକ୍ଷ ।— ( ଗମ୍ଭୀରଭାବେ ) ଏକମାତ୍ର ବାଟ ଯେବେ ଶିକ୍ଷିତ ଯୁବକେ
ଆବଦ୍ଧ ପ୍ରତିଜ୍ଞା-ପାଶେ ହୁଅ ଆଜଠାରୁ ·
ପ୍ରକାଶ୍ୟ ଭାବରେ ଖାଇ ବୈଷ୍ଣବଙ୍କ ଘରେ
ଦେଖାଇବ ନିଜ-ବଳ—ସର୍ବେ ଏକ ହେଲେ
ହଟିଯିବେ ବୁଢ଼ାଯାକ, ହେବ ଦେଶୋଦ୍ଧାର ।

ସମସ୍ତେ ।— ( ତାଳି ବଜାଇ ) ଏହି କଥା ସାର ହେଲା ଆଜଠାରୁ ଜାଣ।

[ ଚପରାସିର ପ୍ରବେଶ ।

ଚପ ।— ( ପତ୍ର ବଢ଼ାଇ ) ବୈଷ୍ଣବ ବାବୁଙ୍କ ଘରର ଆସିଛି ।

ନୀଳ ।— ( ପତ୍ରର ଉପରଭାଗ ଦେଖି ) ଏତ ମୋହୋର ନାମର—( ପତ୍ର ନେଇ ଖୋଲି ପଢ଼ି ) ବଡ଼ ଶୁଭ ସମ୍ବାଦ !

ସମସ୍ତେ ।— ( ଉତ୍କଣ୍ଠିତ ଭାବେ ) କଣ - କଣ ?

ନୀଳ ।— ମୁଁ ପଢ଼ୁଛି ଶୁଣ । ( ପତ୍ରକୁ ଅନାଇ ) ପ୍ରିୟ ନୀଳକଣ୍ଠ, ମୋର ପୁତ୍ର ଶ୍ରୀମାନ୍ ସାଧବ ବିଲାତର ସକଳ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସଚ୍ଚରିତ୍ରତା ଇତ୍ୟାଦିର ସାର୍ଟିଫିକେଟ ନେଇ ଏକାବେଳକେ ଷ୍ଟେଟ ସେକ୍ରେଟରଙ୍କ କର୍ତ୍ତୃକ ଅସାଧାରଣ ଯୋଗ୍ୟତା ହେତୁ ମାଜିଷ୍ଟ୍ରେଟ-କଲେକ୍ଟର ପଦରେ ନିଯୁକ୍ତ ହୋଇ ବିଲାତରୁ ଯାତ୍ରା କରିଅଛନ୍ତି । ମୁଁ ଆଶା କରେଁ ଏଥିରେ ତୁମ୍ଭେମାନେ ଆନନ୍ଦିତ ହୋଇ ଆମ୍ଭ ଗୃହରେ ଆଜ ସନ୍ଧ୍ୟା ସମୟରେ ଭୋଜନ କରି ଚରିତାର୍ଥ କରିବ ଓ ସହାଧ୍ୟାୟୀ ସମସ୍ତ ବନ୍ଧୁମାନଙ୍କୁ ସଙ୍ଗେ ଘେନି ଆସିବ । ତୁମ୍ଭର ଚିର ମଙ୍ଗଳାକାଙ୍କ୍ଷୀ ବୈଷ୍ଣବ ।

ସମସ୍ତେ ।— ( ଆସନରୁ ଉଠି ଆନନ୍ଦରେ ଲମ୍ଫ ପ୍ରଦାନ ପୂର୍ବକ) ଜୟ ଜଗଦୀଶ୍ୱରଙ୍କ ଜୟ ! ଜୟ ବୈଷ୍ଣବଙ୍କ ଜୟ ! ଜୟ ଶିକ୍ଷିତ ସମାଜର ଜୟ !

ଘରେ ।— ( ଦମ୍ଭଭାବେ ) ଆଜିର ପ୍ରତିଜ୍ଞା ଆଜ ହୋଇବ ସଫଳ ।—
ଦେଖନ୍ତୁ ବୁଢ଼ାଏ ଯୁବା ଏକତାରେ ମାତି
କି କରି ପାରନ୍ତି ! ହେଉ ସତ୍ୟ ଭଙ୍ଗ ଏବେ ।

ମାଳି ।— ତପସ୍ୱିନି ! ତୁମ୍ଭେ ଏ ମେଜ ଚୌକି ସବୁ ଉଠାଇ ଦିଅ — ବର୍ତ୍ତମାନ ପିଲାମାନେ ଆସି ଏଠାରେ ପଢ଼ିବେ । ମୁଁ ଟିକଏ ଛାଡ଼ି ଆସୁଛି, ପଢ଼ାଇବି; ପରୀକ୍ଷା ନିକଟ ହେଲା, ଅଭିଭାବନ୍ତ ପଢ଼ା ନ ହେଲେ ଚଳିବ ନାହିଁ ।

[ ସମସ୍ତଙ୍କର ପ୍ରସ୍ଥାନ

ତପ ।— ( ଚୌକି ଉଠାଇ ) ଦେବେନ୍ଦ୍ର !

[ ଦେବେନ୍ଦ୍ରର ପ୍ରବେଶ ।

ଏ ମେଜ ଧର ।— ପଢ଼ା ଛଡ଼ି ଏମାନଙ୍କର ଆଉ କିଛି କାମ ନାହିଁ ।

ଦେବେ ।— ତପସ୍ୱିନି ଭାଇ, ଦେଖୁଛ ଏମାନେ ଚଣା, ଗୁଡ଼ିଆ, ଚେଲା, ଚାମିଲି ଟୋକାଙ୍କୁ ଛମାସ ଭିତରେ କେମନ୍ତ ସୁଧାରି ଦେଲେଣି । ସକାଳେ ମେଜେଷ୍ଟ୍ରେଟସାହେବ ଆସି ପାଠଶାଠ ଦେଖି ଖୁସି ହୋଇ ଗଲେ — ଏମାନଙ୍କୁ ଧନ୍ୟ ଧନ୍ୟ କହିଲେ । ଏମାନେତ ଦଶ ବଡ଼ ଇସ୍କୁଲରେ ପଢ଼ିଛନ୍ତି — ଖାଲି ପଢ଼ା, ବକ୍ତୃତା —

ତପ ।— ( ହସି ) ଆଉ ଭରୁକ କଥା !

ଦେବେ ।— ( ହସି ) ବେଶ୍ ହୋଇଛି — ସେ ବୁଢ଼ା ନଲଠାରୁ ସେହିକଥା ଶାସ୍ତ୍ର । ସେମାନେ ଇସ୍କୁଲରେ ଖେଳ ଗୁଡ଼ିଆ ଯେମନ୍ତେ ନ ପଢ଼ନ୍ତି ସେଥିପାଇଁ କି କମି ହୁକୁମ ଲଗେଇଲେ ? ଏମାନେ ଏବେ ହୋଇ ସରେ ସରେ ବୁଲି ପିଲାଙ୍କୁ ଟାଣି ଆଣୁଛନ୍ତି — ବୁଢ଼ାଯାକ କାଷ୍ଠ ମୋଡ଼ି-ହୋଇ ରହିଲେଣି ଯେ ।

[ ମେଜ ଧରି ତପସ୍ୱୀ ଓ ଦେବେନ୍ଦ୍ରର ପ୍ରସ୍ଥାନ ।

ପଟ-ପରିବର୍ତ୍ତନ ।

—०:०—

ତୃତୀୟ ଦୃଶ୍ୟ । ନଦୀତୀର ।

[ ବୃକ୍ଷ ମୂଳରେ ଗୋବିନ୍ଦ ଓ ଚନ୍ଦ୍ରମୋହନ ଉପବିଷ୍ଟ । ]

ଗୋବି ।— ଟୋକଟା ମୋ ମନକୁ ଏମନ୍ତ ମୋହିନେଇଛି ଯେ ମୁଁ ଦଣ୍ଡେମୁଦ୍ଧା ତାକୁ ପାସୋରି ପାରୁନାହିଁ । ତା ରୂପ ବଂଶଠାରୁ ଆଉ ତା ଗୁଣ କେବଳ ଠାରୁ ବଳେ । ତା ଠାଣି, ତା ଚାହାଣି ଯେ ଦେଖିଛି ସେହି ଜାଣେ — କେତେ ତିଲୋତ୍ତମା, ଉର୍ବଶୀ, ରମ୍ଭାଆଦି ଅପ୍ସରା କଥା ପୁରାଣରେ ଶୁଣାଯାଉଛି ମାତ୍ର ତାହାର ରୂପ ବର୍ଣ୍ଣନା ତାସଙ୍ଗେ ସରନ୍ତିନି — ସେ ଗୋଟିଏ ଗୃହଲରେ ଗଢ଼ା ଆଉ ମର୍ତ୍ତ୍ୟମଣ୍ଡଳରେ ସେ ଗୋଟିଏ । ମୁଁ ପାଠ ଯୋଗି ପାରିଲିନାହିଁ ବୋଲି ପାଠ ଛଡ଼ିଲି ମାତ୍ର ମୋ ମନ ସଦାବେଳେ ଲୀଳାବତୀ ପୋଷି ହେଉଛି ।

ଚନ୍ଦ୍ର ।—ଲୀଳାବତୀ ଚମତ୍କାର ମାଇକିନିଆଟିଏ ମୁଁ ଜାଣେ, ମାତ୍ର ସେ ତୋ ହାତରେ ପଡ଼ିବା ସମ୍ଭବ ଲାଗୁ ନାହିଁ ।

ଗୋବ ।—ଅରେ ହୋ ଏମିତି କେତେ ଦେଖିଛୁ—ମାଇକିନିଆଗୁଡ଼ାକ ହାତରେ ପଡ଼ିଲେ ଗୋଟାଯାକ ହୋଇଯିବେ ।

ଚନ୍ଦ୍ର ।—ଆଉ କେବେ ତା ସଙ୍ଗରେ ଭେଟ ହୋଇଥିଲେ ଯାହା 'ହୋଇଥାନ୍ତା—ସେ ତ ସେପରି ଫରଫରୀ ଦିଶେ ନାହିଁ ।

ଗୋବ ।—ଅରେ ମାଇକିନିଆଙ୍କ ଛଟା ବୁଝିବା ସହଜ ନୁହେଁ । ଯେଉଁଠା ରଅଁ ଫୁଲ ଦେଖିଲାଠୁଁ ଜଣାଯାଏଁ ଆଉ ଯେଉଁଠି ଛପା ବାହାରକୁ କିଛି ଜଣାଯାଏ-ନାହିଁ ସେଇଠି ହାତରେ ପଡ଼ିଲେ ଲହୁଣିଭଳି ମିଳେଇଯାଏ ।

ଚନ୍ଦ୍ର ।—ଭୂତ କେତେଥର ବୈଷ୍ଣବ ନନାଙ୍କ ଘରକୁ ଯାଇଛୁ,—ସେ ତୋତେ କେବେ ଅନେଇଥିଲା ? ମୁଁ ତାକୁ ଯେତେବେଳେ ଯେଉଁଠି ଦେଖିଛୁ ବରାବର ଶାନ୍ତମୂର୍ତ୍ତି ଲକ୍ଷ୍ମୀଟିପରି—ସେ ମୂର୍ତ୍ତି କେବେ ହାତହବାର ନୁହେଁ ।

ଗୋବ ।—ତାର ଶାନ୍ତମୂର୍ତ୍ତି ଦେଖି ମୋର ଅଶାନ୍ତ ହୋଇଛି । ତାର ଲକ୍ଷ୍ମୀପରି ଠାଣି ମୋର ଭାଗ୍ୟଲକ୍ଷ୍ମୀଙ୍କ ଚଞ୍ଚଳା କରିଛି । କାଲି ବୈଷ୍ଣବ ମାମୁଙ୍କ-ଘରେ ସେ ଯେଉଁ ଭଙ୍ଗୀରେ ଆସି ମୋତେ ପାନ ଦେଲା, ମୋତେ କି ଅନାଉ ପଛକେ, ମୋ ମନ ଗାଢ଼ି ଏକାବେଳକେ ଲାଖିଗଲା—ମୋତେ ଭାବନା ସବୁ ଖର ଦିଶୁଛି । ତା ବୋଉ ଯେ ରୁଦ୍ରମୂର୍ତ୍ତି—ନୋହିଲେ ତା ଘରକୁ ଯାଇ ସନ୍ଧାନ ଲଗେଇଥାନ୍ତି । ତହିଁରେ ପୁଣି ସେ ଗୁମାସ୍ତା ଲୁଚ୍ଚିଆ ବୁଢ଼ା ଆଉ ତା ଲିହସା ବୁଢ଼ୀ ସବୁବେଳେ ତା ପଛେ ପଛେ, କେବେ ଦଣ୍ଡେ ଆଖିଉହାଡ଼ କରୁନାହାନ୍ତି ।—ନୋହିଲେ ଏତେଦିନ ଗଛପରି ଷୋଳବର୍ଷୀ ମାଇକିନିଆ କାହାର ହାତ ନ ହୋଇ କି ରହିଥାନ୍ତା ? (ମୁଣ୍ଡରେ ହାତ ମାରି) ଗୋବିନ୍ଦ କେତେ କେତେ ପୁଷ୍ପ କେଉଁଠି କେଉଁବାଟେ ମନ୍ଥିପକାଇଛି, ଏତକ ଆଉ ପାରିବ ନାହିଁ ତ କି ମରଦ !

ଚନ୍ଦ୍ର ।—କାଲି ତୁ କୁଆଡ଼େ ଥିଲୁ ?

ଗୋବ ।—କାଲି ଏଠିକି ଆସି ନ ଥିଲି କି ? ତୋତେ ଖୋଜି ଖୋଜି ଉଛୁର ହୋଇଗଲା—ଅଳ୍ପବେଳକୁ ସେ ଗୁଲିଗଲାଣି । ଏ ଜଣକଥା କଥା-ନହେ—ହେବେ ହୁଏଲେ ଯୁଦ୍ଧବେଳକୁ ପାଖରେ ଥାଇ ଥିଲେ ପରୁଆ ନ ଥାଏ ।

ଚନ୍ଦ୍ର ।—ନାହିଁ ? ଏବେ ଉଛୁର ହେଲାଣି, ଘଡ଼ି ଘଡ଼ିଏ ହୋଇଗଲା—ଆଉ ତେବେ କେତେବେଳେ ଆସିବ !—ଏହି ଥରକୁ ଆସିବ କି ?

ଗୋବ ।—ଏଇ ଆସୁଥିବ—ଆଜ ତ ଆମେ ସଞ୍ଜବେଳୁ ଜଗିଛୁଁ । ସେ ବଗିଚାର ଏହିଆଡ଼େ ଆସେ—ଏଇଠି ପୋଖରୀପାଖି ବସେ । ଦେଖ, ଯେମିତି ଆସିବ ମୁଁ ଲୁଚିକରି ଯାଇ ତାକୁ ଧରିବ । ଅନ୍ଧାରରେ କିଛି ଦେଖାଯାଉ ନାହିଁ—ମୁଁ ଉଠିଗଲେ ତୁ ଗଛପଛକୁ ଚାଲିଯିବୁ ।

ଚନ୍ଦ୍ର ।—ହଉ । (ଲୁଚିକରି) ଦେଖିଲୁ, ଦୂରରେ ମଣିଷଟାଏ ଆସିଲାପରି ଜଣେ ଦିଶୁଛି ।

ଗୋବ ।—(ଟିକିଏ ଦୂରକୁ ଅନାଇ) ହିଁ—ସେହି ହବପରି—ସେହି ତ (ଉଠି ଛିଡ଼ା ହୋଇ ଗମନୋଦ୍ୟତ) ତୁ ଯା ।

ଚନ୍ଦ୍ର ।—ଦେଖ, ହୁସିଆର । ମୁଁ ଯାଉଛି (ପ୍ରସ୍ଥାନ ।)

ଗୋବ ।—(କ୍ଷୀଣସ୍ୱରେ) କେବେ ଦେଖିଛି ମ—ତୁ ଯା । (ଟିକିଏ ଅଗ୍ରସର ହେବା)

[ ଲୀଳାବତୀର ପ୍ରବେଶ ।

(ହଠାତ୍ ଯାଇ) ଆସ, ଗୋବିନ୍ଦ କେତେବେଳୁଁ ଅନାଇ ବସିଛି (ଲୀଳାବତୀକୁ କୁଣ୍ଢାଇ ଧରିବା) ।

ଲୀଳା ।—(ଉଚ୍ଚୈଃସ୍ୱରେ) ବୋଉ ଲୋ ! (ଗୋବିନ୍ଦଉପରେ ମୂର୍ଚ୍ଛାରେ ପଡ଼ନ ।)

[ କନକଲତାର ଦ୍ରୁତବେଗେ ପ୍ରବେଶ ।

କନ ।—(ଦଉଡ଼ି ଗୋବିନ୍ଦକୁ ଧରି) ଏ କି ହଟା ? ଗୋବିନ୍ଦା ! ତୁ ପରଝିଅ ଦେହରେ ହାତ ଦେଉଚୁ !—ଏଡ଼େ ପାଷଣ୍ଡ ! ତୋର ଏଡ଼େ ଧଡ଼ !!

[ ଚନ୍ଦ୍ରମୋହନର ଦ୍ରୁତ ପ୍ରବେଶ ।

ଚନ୍ଦ୍ର ।—(ଦଉଡ଼ିଆସି କନକଲତାକୁ ପଛରୁ ଝିଙ୍କି) ଏ ବୁଢ଼ୀ ପୁଣି କୁଆଡ଼ୁ ଜଞ୍ଜାଳ ଲଗେଇବାକୁ ଆଇଲା (କ୍ରୋଧେ) ଚାଲ !

[ ଦୁଇଜଣ କନେଷ୍ଟବଲ ଓ ଜଣେ ଚପରାସୀ ସହିତ ମାଜିଷ୍ଟ୍ରେଟ ସାହେବର ପ୍ରବେଶ ।

ମାଜି ।—ପକଡ଼ୋ ଏ ଦୋନୋ ଆଦମିକୁ—ଏ ଲୋକ ସାମକୁ ଅନ୍ଧାରମେ ଭିତର ଲେକେ ଗୋଲମାଲ କରତେହେଁ ।

କନେଷ୍ଟବଲଦ୍ୱୟ ।—(ଗୋବିନ୍ଦ ଓ ଚନ୍ଦ୍ରମୋହନକୁ ଧରିବା)

ମାଜି ।—ମାଉସି, ଏମାନେ ସଞ୍ଜବେଳେ ଏଠି କଣ କରୁଥିଲେ—କିଏ ପାଟିକଲା ?

କନ ।—ମୁଁ ପୋଖରୀପାଣି ଆସିଥିଲି—ଲୀଳା ମୋ ଆଗେ ଆଗେ ଆସୁଥିଲା । ସେ ଟିକିଏ ମୋ ଆଖିର ଆଢୁଆଳ ହେଲାରୁ ତାକୁ ଗୋବିନ୍ଦା କୁଣ୍ଢାଇପକେଇଲା—ସେ ପାଟି କଲା । ମୁଁ ଦଉଡ଼ି ଆସି ଧରିଲାରୁ ଏ ଟୋକା ଚନ୍ଦ୍ରା ଆସି ମୋତେ ଝିଙ୍କିଲା ।

ଜଣେ , ନଫେ ।—ହଜୁର ଓ ଭିତର ବେହୋସ ପଡ଼େ ହେ ।

ମାଜି ।—ତପରାସି, ଦୌଡ଼ୋ, ଜଦାସେ କପଡ଼ା ଭିଗାକେ ପାନି ଲାଓ ।

ତପ ।—ଜୀ ହଜୁର ! ( ବେଗେ ପ୍ରସ୍ଥାନ । )

ମାଜି ।—( ସ୍ୱୟଂ ଗୋବିନ୍ଦଠାରୁ ଲୀଳାବତୀଙ୍କୁ ପୃଥକ କରି ତଳେ ଶୁଆଇଦେବା । )

ଗୋବି ।—( କମ୍ପି କମ୍ପି ) ହଜୁର, ମୋ ସଙ୍ଗେ ତାର ଗ୍ରହ ଥିଲା—ସେ ଛଟାଗାଉଛି ।

ମାଜି ।—ଝୁଟ୍‌ବାତ !—ତୋ ସଙ୍ଗେ ତାର ଗ୍ରହ ଥିଲାତ ପାଟି କଲା କାହିଁକି ? ଏ ତ ଯେଷଣା ନୁହେ—ହୋରବସ୍ତ କାଠପରି ବେହୋସ !

ରନ୍ ।—( କମ୍ପି କମ୍ପି ) ହଜୁର, ମୁଁ ଏବାଟେ ଯାଉଥିଲି—ମୋ ନାଁରେ ମିଛରେ ଲଗାଇ କହୁଛି । ମୁଁ ତାକୁ କେବେ ଛିଙ୍କା ଓଟଗ କରିନାହିଁ ।

ନନ ।—( ସ୍ୱଗତରେ ) ଓଟାଇ ନାହିଁ ? ତୁ ଏତେ ବାହାପିଆ ?

ମାଜି ।—ମୁଁ ନଜେ ଦେଖିଛି ତୁ ତା ହାତ ଧରି ପଛକୁ ଝିଙ୍କୁଥିଲୁ ।

[ ଓଦା ଲୁଗା ହସ୍ତେ ତପରସିର ପ୍ରବେଶ ।

ମାଜି ।—( ହାତରେ ଓଦା ଲୁଗା ନେଇ ଚିପୁଡ଼ି ଲୀଳାବତୀର ମସ୍ତକ ଓ ମୁଣ୍ଡରେ ସିଞ୍ଚିବା । )

ଲୀଳା ।—( କଷ୍ଟରୁ ଚେତନ ହୋଇ ) ଓଃ ! କିଏ ?—ଯମଦୂତ !—ଭୂତ !

ମାଜି ।—ଯମଦୂତ ନୁହେ କି ଭୂତ ନୁହେ—ତୁମ ଜାଢ଼ପୁଅ ଗୋବିନ୍ଦ !

ଲୀଳା ।—( ଚକ୍ଷୁ ମେଲି ଅନାଇ ସମ୍ମୁଖେ ଉଠି ) ତୁମେ କିଏ—ସାହେବ ?

ମାଜି ।—ମୁଁ ମାଜିଷ୍ଟ୍ରେଟ ।—ଗ୍ରାମ୍ମ ମଣ୍ଡଳରେ ବୁଲୁ ବୁଲୁ ଏ ବାଟେ ଯାଉଥିଲି—ତୁମ ପାଟି ଶୁଣି ଦଉଡ଼ି ଆସି ଏ ରଙ୍ଗ ଦେଖୁଛି ।—ତୁମର ଜ୍ଞାନ ହେଲା—ତୁମେ କିଏ ?

ଲୀଳା ।—ମୁଁ ଅନନ୍ତ ହରଙ୍କର ଝିଅ ।

ମାଜି ।—ତୁମ୍ଭେ ଅନନ୍ତ ହରଙ୍କ ଝିଅ !—ହେମମାଳୀଙ୍କ ଝିଅ ! ( କନକଲତାକୁ ଦେଖାଇ ) ଏ କିଏ ?

ଲୀଳା ।—( କନକଲତାକୁ ଅନାଇ ) ସେ ଆମ ଗୁମାସ୍ତା କୁଞ୍ଜବିହାରଙ୍କ ଭାର୍ଯ୍ୟା—ମୁଁ ତାଙ୍କୁ ମାଉସୀ ବୋଲି ଡାକେଁ ( ଧୀରେ ଧୀରେ ଉଠି କନକଲତା ପାର୍ଶ୍ୱରେ ଦଣ୍ଡାୟମାନା । )

ମାଜି ।—ମୁଁ ଜାଣେଁ ତୁମ୍ଭ ବାପା ହେମମାଳୀ ଭଲ ଜମିଦାର । ସେ ଲୋକ ହେଲେ କି ହେଲା ତାଙ୍କର ଭଲ ବୁଦ୍ଧି ଅଛି । ଅନେକ ମର୍ଦ୍ଦ ଜମିଦାର ତାଙ୍କୁ ଲାଗନ୍ତି ନାହିଁ । ହେମମାଳୀଙ୍କି ସମସ୍ତେ ପ୍ରଶଂସା କରନ୍ତି—ବେଶ୍ ପ୍ରଜା ପାଳନ୍ତି, ସମସ୍ତଙ୍କୁ ମାନନ୍ତି । ଅମଲା କି ହାକିମ କି ପ୍ରଜା କେହି କେବେ ତାଙ୍କର ନିନ୍ଦା କରିବାର ଶୁଣା ନାହିଁ । କୁଞ୍ଜବିହାରୀ ମହାନ୍ତିଙ୍କ କଥା କି ମୁଁ ଭଲ କରି ଜାଣେ । ସେ ବଡ଼ ନମକ୍‌ସର୍ଦ୍ଦ ଶୂକର ।

[ କୁଞ୍ଜବିହାରୀର ପ୍ରବେଶ ।

କୁଞ୍ଜ ।— ସଲାମ ହଜୁର !

ମାଜି ।— ଦେଖ କୁଞ୍ଜବିହାରି, ତୁମ୍ଭର ସାହାଯ୍ୟ ନ ଥିଲେ ଏ ବଦମାଏସମାନେ ଗୋଟାଏ ବଡ଼ ଖରାପ କାମ କରିଥାନ୍ତେ । ଗୋବିନ୍ଦର ଅନେକ ଖରାପ କାମ ମୋ କାନକୁ ଆସିଛି ।

ଗୋବି ।— ( କମ୍ପିତ ) ହଜୁର ମୁଁ କେବେ କିଛି ଖରାପ କାମ କରିନାହିଁ — ମୁଁ ଭଲ ଲୋକ ।

ଚନ୍ଦ୍ର ।— ( କମ୍ପିତ ) ହଜୁର ମୁଁ କେବେ କାହାରି ଶିଷାରେ ପଡ଼ିନାହିଁ ।

ମାଜି ।— ମୋତେ ସବୁ ଜଣା ଅଛି ।— ଏ ମୋକଦମା କାଲି ବୁଝାଯିବ । ତୁମ୍ଭେ ଏ ସ୍ତ୍ରୀଲୋକମାନଙ୍କୁ ଘରକୁ ନେଇ ଯାଅ । ଏ ଝିଅକୁ ହେମମାଳୀଙ୍କ ଜିମ୍ମା କରିଦେବ ଅଉ କହିଦେବ ଅମ୍ଭେ ତାଙ୍କର ମୂରବିଧର—ସେ କିଛି ଚିନ୍ତା କରନ୍ତୁ ନାହିଁ, ଏ ଝିଅର କିଛି ଦୋଷ ନାହିଁ । ମୁଁ ଏମାନଙ୍କୁ ଗାରଦରେ ଦେଉଛି ।—ଲେ ଚଲୋ ଦୋନୋ ଆସାମିକୁ କନେଷ୍ଟବଲ !

କ, ହସ୍ନୁ ।— ଯୋ ହୁକୁମ ହଜୁର !

[ କନକଲତା ଓ ଲୀଳାବତୀ ସହିତ କୁଞ୍ଜବିହାରୀର ପ୍ରସ୍ଥାନ ଓ ଗୋବିନ୍ଦ ଓ ଚନ୍ଦ୍ରମୋହନଙ୍କୁ ଧରି କନେଷ୍ଟବଲ ହସ୍ନୁ ଓ ଡେପୁଟୀ ମାଜିଷ୍ଟ୍ରେଟ ଓ ଚପରାସିର ପ୍ରସ୍ଥାନ ଓ ଅଦୃଷ୍ଟ କୁମାରୀଗଣର ଗୀତ ଗାଉଁ ୨ ପ୍ରବେଶ ।

ଅ: କୁ: ।— ( ନୃତ୍ୟ ସହିତ ଗୀତ )

ରାଗିଣୀ ଖମ୍ବାଜ । ତାଲ କବାଲି ।
ବିଦ୍ୟାରତ୍ନ ଯେତ୍ନ ଶିରେ ଧରି ନାହିଁ ।
ମଣିହରା ଫଣୀପରି ଦଶା ପାଇ । ସୋଷା ।
ଦୁଃଖର ତରଙ୍ଗେ ଭାସି ରଙ୍ଗେ ଭଙ୍ଗେ
ଶେଷେ ଯାଏ ପ୍ରାଣ କଳବଳ ହୋଇ । ୧ ।
କୁମତି କୁସଙ୍ଗ କୁ-ଅଭ୍ୟାସବଶି
ନାଶେ ମନୁଷ୍ୟତା ଦୁର୍ଦ୍ଦଶା ଭିଆଇ । ୨ ।
ଦେଖି ଶିଖ ସର୍ବେ ଧରି ସଦାଚାର—
ସତ୍ୟଶିକ୍ଷା-ଯନ୍ତ୍ରେ ମହାଫଳ ପାଇ । ୩ ।
ଘୋଷ ଜୟନାମ ପୂରୁ ମନସ୍କାମ
ପ୍ରଭୁ-ଆଶୀର୍ବାଦେ ଜନ୍ମମୁକ୍ତ ହୋଇ । ୪ ।

ଯବନିକା ପତନ ।

—***—

# ଦ୍ୱିତୀୟ ଅଭିନୟ ।

## ପ୍ରଥମ ଦୃଶ୍ୟ । ଉପବନସ୍ଥ କୁଟୀର ।

[ କୁଟୀର ସମ୍ମୁଖରେ ବ୍ରହ୍ମାନନ୍ଦସ୍ୱାମୀ ଉପବିଷ୍ଟ, ସମ୍ମୁଖରେ ଅଗ୍ନି ପ୍ରଜ୍ୱଳିତ ଓ ଆଜ୍ୟପାତ୍ରାଦି ହୋମୋପକରଣ ପାର୍ଶ୍ୱରେ ସ୍ଥାପିତ । ]

ବ୍ରହ୍ମା ।— ( ସ୍ରୁବଦ୍ୱାରା ଅଗ୍ନିରେ ଆହୁତି ଦେଉଁ ) ଓଁ କବିମଗ୍ନିମୁପସ୍ତୁହି ସତ୍ୟଧର୍ମାଣମଧ୍ୱରେ । ଦେବମମୀବଚାତନଂ ସ୍ୱାହା । ( ଆହୁତି ପ୍ରଦାନ । ) ଓଁ ପୁରମ୍ଭିନ୍ଦୁର୍ଯୁବା କବିରମିତୌଜା ଅଜାୟତ । ଇନ୍ଦ୍ରୋ ବିଶ୍ୱସ୍ୟ କର୍ମଣୋ ଧର୍ତ୍ତା ବଜ୍ରୀ ପୁରୁଷ୍ଟୁତଃ ସ୍ୱାହା । ( ଆହୁତି ପ୍ରଦାନ । ) ଓଁ ସ ନଃ ପିତେବ ସୂନବେଽଗ୍ନେ ସୂପାୟନୋ ଭବ । ସଚସ୍ୱା ନଃ ସ୍ୱସ୍ତୟେ ସ୍ୱାହା । ( ଆହୁତି ପ୍ରଦାନ । ) ଓଁ ହିରଣ୍ୟଗର୍ଭଃ ସମବର୍ତ୍ତତାଗ୍ରେ ଭୂତସ୍ୟ ଜାତଃ ପତିରେକ ଆସୀତ୍ । ସ ଦାଧାର ପୃଥିବୀଂ ଦ୍ୟାମୁତେମାଂ କସ୍ମୈ ଦେବାୟ ହବିଷା ବିଧେମ ସ୍ୱାହା । ( ଆହୁତି ପ୍ରଦାନ । ) ଓଁ ଯ ଆତ୍ମଦା ବଳଦା ଯସ୍ୟ ବିଶ୍ୱ ଉପାସତେ ପ୍ରଶିଷଂ ଯସ୍ୟ ଦେବାଃ । ଯସ୍ୟଚ୍ଛାୟାମୃତଂ ଯସ୍ୟ ମୃତ୍ୟୁଃ କସ୍ମୈ ଦେବାୟ ହବିଷା ବିଧେମ ସ୍ୱାହା । ( ଆହୁତି ପ୍ରଦାନ । ) ଓଁ ମା ନୋ ହିଂସୀଜ୍ଜନିତା ଯଃ ପୃଥିବ୍ୟା ଯୋ ବା ଦିବଂ ସତ୍ୟଧର୍ମା ଜଜାନ । ଯଶ୍ଚାପଶ୍ଚନ୍ଦ୍ରା ବୃହତୀର୍ଜଜାନ କସ୍ମୈ ଦେବାୟ ହବିଷା ବିଧେମ ସ୍ୱାହା । (ଆହୁତି ପ୍ରଦାନ ।) ଓଁ ବିଶ୍ୱାନି ଦେବସବିତର୍ଦୁରିତାନି ପରାସୁବ । ଯଦ୍ଭଦ୍ରଂ ତନ୍ନ ଆସୁବ ସ୍ୱାହା ।( ଆହୁତି ପ୍ରଦାନ । )

[ ବୀରେନ୍ଦ୍ର, ଅକ୍ଷୟ, ନୀଳକଣ୍ଠ, ଆନନ୍ଦ ପ୍ରଭୃତି ଶିକ୍ଷିତ ଯୁବକବୃନ୍ଦର ପ୍ରବେଶ ।

ବୀରେନ୍ଦ୍ର ପ୍ରଭୃତି ।— ( ହାତ ଯୋଡ଼ି ନମସ୍କାର କରି ) ନମସ୍ତେ !

ବ୍ରହ୍ମା ।— ( ଉଦ୍‌ବାହୁ ) ନମସ୍ତେ ! ନମସ୍ତେ ! ନମସ୍ତେ ! — ଠିକ୍ ମୋ ହୋମ ଶେଷ ହେଲାବେଳେ ଆସିଛ ।

ବସ ସବେ ଏହିଠାରେ;—

ବୀରେନ୍ଦ୍ରପ୍ରଭୃତି ।—( କିଛିଦୂରରେ ସସମ୍ଭ୍ରମ ଉପବିଷ୍ଟ । )

ବ୍ରହ୍ମା ।—

ଭଲବେଳେ ଆଜ<br>
ଆସିଲ ମୋ କୁଟୀରକୁ—ପୂତଯଜ୍ଞଧୂମେ<br>
ପବିତ୍ର ଈଶ୍ୱରନାମେ ବେଦବାଣୀକ୍ରମେ

ଧନ୍ୟ ଏ ବନସ୍ଥଳୀ ଅତୀବ ପବିତ୍ର
ଭବ ସମ ଧର୍ମାଙ୍କ ସମାଗମ ସେନ !
ସ୍ୱଜନ ଆତ୍ମୀୟେ ପୁଣି ସ୍ୱମତସମ୍ମାରେ
ସରସ୍ୱତୀବଳେ ଯାର ଶୁଭକର୍ମ ଜାତ
ଶରୀର ପବିତ୍ର ତାର, ପୁଣ୍ୟ-ଆତ୍ମା ସେହି,
ଚତୁର୍ବର୍ଗ ଫଳେ ତାର ଧ୍ରୁବ ଅଧିକାର—
ତାର ସଙ୍ଗେ ସମାଗମ, ସମ୍ଭାଷଣ, ପ୍ରୀତି
ଅମୃତରୁ ବଳେ—ମୋତେ ଭୂତଳର ଅଛି ।
ସାଧୁ ।—( ବିନୀତଭାବରେ ) କୃତାର୍ଥ କରନ୍ତି ଶ୍ରୀଃ—ମାତ୍ର ଏ ଭୃତ୍ୟର
ଅଟୁଁ ଅଭାଜନ ସର୍ବେ—ନିତାନ୍ତ ଅଯୋଗ୍ୟ ।
ଯେ ବିଶ୍ୱ-ସଂସାର-ଧାତା-ପ୍ରେମରେ ବିହ୍ୱଳ,
ବ୍ରହ୍ମଜ୍ଞାନ-ଆନନ୍ଦରେ ବ୍ରହ୍ମାନନ୍ଦ ନାମ
ଅଛି ଯେହୁ ସ୍ୱାମିପଦେ ସମାସୀନ ହୋଇ
ଲୋକ-ହିତେ ପର-ଉପକାର-ବ୍ରତ ଧରି
ସ୍ଥାନେ ସ୍ଥାନେ ବ୍ରହ୍ମନାମ ବ୍ରହ୍ମକାର୍ଯ୍ୟ ଘୋଷି
ମୂଳୁଳାଏ ଉନ୍ନତିର ପଥ ପ୍ରୀତିଭରେ,
ସେ ଯହିଁ ବଜନେ ତାହା ହେବ ଶୁଦ୍ଧ ଅପେ:—
ଅଭାଜନ ସଂସାରର କ ହେବି ଅଧିକ ?
କବା ପଢିଅଛୁ ପାଠ ? କେତେ ଅବା ବିଦ୍ୟା
ଅସୀମ ଅନନ୍ତ ବିଦ୍ୟା-ମହା-ଅର୍ଣ୍ଣବରୁ
ଅର୍ଜିଛୁ ? — ବିଦ୍ୱାନ ନାମ କହିଲ ସାର୍ଥକ
ସରସ୍ୱତୀ-ବରପୁତ୍ର ସ୍ୱାମିଙ୍କ ଆଗରେ ।
ଅମ ।— ( ନମ୍ରଭାବରେ ) ସଂସାର -ବନ୍ଧନ-ବଶେ ହୋଇ ଜର୍ଜରିତ
ସରସ୍ୱତୀ-ସ୍ଥଳଦେଶେ ଦୁର୍ଦ୍ଦଶା-ମରୁରେ
ହଂସା ଉଡ଼ିଯାଏ ଯାର, ବିବାଦ-ଝଞ୍ଜାରେ
ଝଞ୍ଜଟ ବଢ଼ୁଛି ଜତ ନିବାରଣୋଦ୍ଦେଶେ,
ଲୋକଙ୍କ ମନକୁ ଯହିଁ ଉନ୍ନତିର ବାଟ
କ ଆସଇ ଭଲେ ଦେଲେ, ଏତ୍ରିକ ଅଦୃଷ୍ଟ—
ସଦା ମନ୍ଦପଣ ଲାଗେ ଅମୃତ ସମାନ,
ସେ ହେବେ ଯା ଫଳଭୋଗ ହେବାର

ଧର୍ମ-ଅର୍ଥ-କାମ-ମୋକ୍ଷ ଅଟଇ ସଞ୍ଚମ ।
ହେଉଛୁ ସଫଳ ଯାର ସତ୍ୟ ଉପଦେଶ
ଅଲସ-ନିଦ୍ରାରେ ସୁପ୍ତ ଲୋକଙ୍କ ଦେଶରେ
ନିଶାକାଳ ସ୍ୱପ୍ନଧିର ଝିଙ୍କାରିବ ଶର
ଅବା ବନଫୁଲବାସ ଐଶ୍ୱର୍ଯ୍ୟ-ଆକର,
ସମାଗମ ତାର ଅବା ପ୍ରୀତି ସମ୍ଭାଷଣ
ଜୀବନ୍ତ ପ୍ରାଣିଙ୍କୁ କରେ ମୃତପ୍ରାୟ ବଳେ
ତହିଁ ପ୍ରୀତି ସ୍ୱାମିଙ୍କର ଉଦାର ପ୍ରକୃତି—
ଆମ୍ଭ ସମସ୍ତଙ୍କ ତହୁଁ ସଫଳ ଜନମ ।

ଶୀଳ ।— ( କରଯୋଡ଼େ ) ସ୍ୱାମିନ୍ !

ଅପାଣ୍ଡବ ଦେଶେ ଯେତେ ଅଫୁଟା କଳୁଲି
ତେସନ ଅବିଦ୍ୟଲୋକେ ଅଫୁଟା ବେଗର—
ମଣିନ୍ତି ବିଦ୍ୱାନେ ଯେତେ ଅକାଳ-ଲୁଣ୍ଠିତ
ଅଥବା କଣ୍ଟକବୃକ୍ଷ ଅନର୍ଥର ହେତୁ ।
ତାହିଁ ସତ୍ୟ ଶାସ୍ତ୍ରଧର୍ମ କର ଆଲୋଚନା
ବଢ଼ାଇବେ ଦେଶମାନ ଆପଣା ମର୍ଯ୍ୟାଦା
ବିଦ୍ୟାର ଆଦରେ ନିଜ ଆଦର ବଢ଼ାଇ,
ଛାଡ଼ି ସବ ବାଧା ହୋଇ ଅଜ୍ଞାନ-ଅନ୍ଧାରେ
ଅନ୍ଧାର ମଣିନ୍ତି ପ୍ରିୟ ଉଲ୍ଲୁକ ପଶ୍ଚେ
ବାରବାରଙ୍ଗନା ଯାହା ନିଶା ଅନୁଚର
ପ୍ରମତ୍ତ ରହିଁରେ, ଦେଖେ ରହୁନାହିଁ ଆଉ
ସଙ୍ଗୀତ୍ୱ ଧରମ ଅବା ସତ୍ୟବେଦ-କ୍ରିୟା ।
ଆଶ୍ରମ ମଧ୍ୟରୁ ସାର ବ୍ରହ୍ମଚର୍ଯ୍ୟ ସୁଧା ,
ଧ୍ୟାନ୍ତ ଏକାବେଳେ ଆହା ! ଭକ୍ତିଫଳ ଯଉ
ଅତି ଅବହେଳେ—ହେଉଁ ବାଲୋପନୟନ
ଦଅନ୍ତି ସନ୍ତାନେ ଲମ୍ଫ ଗୃହସ୍ଥାଶ୍ରମକୁ
ଯେଁପଇ କୁମାରେ ସମାବର୍ତ୍ତନ କରାଇ
ଧରାଇଦଅନ୍ତି ହେଲେ ଅଜ୍ଞାନ ବାଳକ
ଯାହା ସାତବରଷର ଦେହ ବଦଳରେ ।
ଫଳୁଛି ତାହାର ଫଳ ଯୋଗିଛି ଦୁର୍ଦ୍ଦଶା-

କେତେ ଗର୍ଭପାତ କେତେ ଜାରଶିଶୁ ଜାତ
ଜାତି କୁଳ ଧ୍ୱଂସକାରୀ, ତଥାପି ତହିଁରେ
ଏମନ୍ତ ଉନ୍ନତି—ପାଇଁ ଫିଟାଇଲେ ଥରେ
ଅପମାନ ଲଜ୍ଜାକାର ହୁଅନ୍ତ କୃତାନ୍ତ ।
ଗୋବିନ୍ଦଚନ୍ଦ୍ରଙ୍କ ପରି କେତେ କୁଳାଙ୍ଗାର
ଯାନ୍ତି କାରାଗାର—ତାହିଁ ବେଦନା ତହିଁରେ,
ବସିଲାଣି ବନ୍ଧି, ତାଙ୍କୁ କାଟିବାକୁ ଗଲେ
ଯନ୍ତ୍ରଣାରେ ଛଟପଟ ହୋଇବେ ସରବେ ।
ମଦ ଖାଅ ପଢ଼ି, ତାହିଁ ତହିଁକ ଶୋଚନା,
ଦେହେ ବୋଝହେଲେ ହେବ ଜାତିରେ ଅଟକ ।
କପାଳ ଏମନ୍ତ ଜନ୍ମ ସେହଦେଶେ ହେଲା !—
ପୂର୍ବ-ଜନ୍ମ-ତପସ୍ୟା କି ଏମନ୍ତ ଅସାର ?
ଏଭନ ଲୋକର ପାଦେ ନଷ୍ଟ ବନସ୍ଥଳୀ—
ପୂର୍ବ ଯେବେ ତେବେ ଏକା ସ୍ୱାମି-ପଦ-ତଳେ ।
ଅଦ ।— ( ଜନମନ୍ତ୍ରକରେ ) ଲକ୍ଷିତଜୀବନ ପ୍ରତିଦିନ ପ୍ରତିପଦେ
ସ୍ୱଜାତି ସ୍ୱଦେଶବାସୀ ଲୋକଙ୍କ ଠାବରେ ।—
ପଢ଼ାଇଲେ ଯିବା ଦୁଃଖୀ ଥିଲେହେଁ କରାନ୍ତ—
ଦେଶ ଦେଶ ଭ୍ରମି ନାନା ଶାସ୍ତ୍ରପଢ଼ା ଗୁଣେ,
ଅର୍ଜିଲି ଅଶେଷ ଶ୍ରମେ ସର୍ବୋଚ୍ଚ ଉପାଧି
ବଙ୍ଗ ବିଶ୍ୱ ବିଦ୍ୟାଳୟେ ମିଳିପାରେ ଯାହା,
ମଣିଲ ମୋ କଥା ଏବେ ଶୁଣିବେ ସକଳେ,
ଗମିବେ ଉନ୍ନତିପଥେ—ଚଳାଇବି ତାଙ୍କୁ
ଯେରୂପେ ଭାସିବ ଦେଶ ସୁଖଶାନ୍ତିଜଳେ;
ମାତ୍ର ଦେଖୁଅଛୁ ଆସି ବିଅର୍ଥ ସକଳ-
ବଧିର ଦେଶରେ ଯେସନେ ସଙ୍ଗୀତ-ଆଳାପ—
ଗାଉଛୁ ତାହିଁକ ଯିବା ଶ୍ରମ କଲେ ଏତେ ।
ଅଳିଲଧନକୁ ଯେବେ କରଥାନ୍ତେ ଶୋକ—
ଧରି ମାଛ ମୁହିଁ ସୁଖେ କାଟୁଥାନ୍ତି କାଳ
ଏ ସବୁ ଜଞ୍ଜାଳ ଆଉ କ ଥାନ୍ତା ଭାଗ୍ୟଙ୍କୁ !
ଲୋକଙ୍କ ଜବେଦ ବୁଦ୍ଧି ହୋଇଛି ଓଲଟା

ସମାଶକାଳରେ—ମହା କଠିନ ଯେଉଁବା !
ପଢ଼ଗା ହୋଇଛି ଯେତେ ମିଠା ଗାଳ୍ପଣ,
ସମ୍ମୁଖରେ ଅପଭ୍ରଂଶ ଅମୃତ ସମାନ,
ଉପକାରୀ-ଅପକାର ଗୌରବ-ବିଷୟ—
କୃତଜ୍ଞତା ପାଶ ଦେଇ ନ ଯାନ୍ତି କୃତଘ୍ନେ !
ଅବନତି ଆପଣାର ନ କଲନ୍ତି ଥରେ
ପାରୁପଣେ ସମସ୍ତଙ୍କୁ ଦେଖାନ୍ତି ରହିଁରେ
ଶୃଗାଳ ଲାଙ୍ଗୁଳଛେଦ କରିଥିଲେ ଯାହା ।
ଉପହାସ ମସଲିତ ଧମକ ଚମକ
ଶୁଣି ଶୁଣି ଦବିଗଇ ଯାଉଅଛି ଜଉ
ଶିକ୍ଷିତ-ସମାଜ-ଭୁକ୍ତ ସଦସ୍ୟ ସକଳେ ।—
ଉଦୟେ ଏହାଙ୍କ କେବେ କହୁଇଁ ପଦ୍ଧତ
ଉପବନ ମନୋରମ,—ଅପଦାର୍ଥେ କେବେ
ହୁଏ ବଡ଼ପଣ ? କାହିଁ ଶୁଦ୍ଧି ମିଳଥାଇ
ପାବକ ଅଭାବେ ? ଧନ୍ୟ ଉପବନ ଏବେ
ହୋଇଛି ମହଦାଶୟେ—ତବ ଆଗମନେ—
ହୋଇଅଛୁଁ ସର୍ବେ ଧନ୍ୟ ତବ ଦରଶନେ ।

ଅନ୍ୟ ଯୁବକବୃନ୍ଦ ।—(ହାତଯୋଡ଼ି) ତାହିଁ କଥା ଏଥିବର ଆମ୍ଭମାନଙ୍କର
ଅବଧାନ ହେଉ, ସ୍ୱାମିନ୍ ! ଉପାୟ ଏଥିର ।

ବୃଦ୍ଧା ।—(ସହାସ୍ୟବଦନରେ) ସାଧୁ ! ସାଧୁ ! ସାଧୁ !
ଧନ୍ୟ ଦେଶ ଭୂମେ ଯାର ଅଟ ସୁସନ୍ତାନ !
ଜନକ ଜନନୀ ଧନ୍ୟ ! କୁଳହିଁ ଉଜ୍ଜ୍ୱଳ !
ମହାର୍ଣ୍ଣବ ସରସ୍ୱତୀ ମହାରତ୍ନ ସ୍ତୁତ
ହୃଦୟ ଦେଶରେ ଶକ୍ତି ବଢ଼ାଇ ସୁଜ୍ଞାନ
କରୁଛି ମହତ ଯେବେ ଶିକ୍ଷିତ ଯୁବକେ
ଜନ୍ମାଇ କର୍ତ୍ତବ୍ୟ ଜ୍ଞାନ ମୋହନ ମନ୍ତ୍ରରେ ।
ପାଇଛ ସକଳେ ସେହ ସ୍ୱରନ୍ତ୍ର ଛମରେ,
ଉଡ଼ାଇଛ କେତୁ—ଖର୍ତ୍ତି ହୋଇଛୁ, ବିସ୍ତାର ।—
ନ ଶୋଭଇ ଅତ୍ମଗ୍ଲାନ ବିହାନ-ଧମାନେ,
ଶୋଭଇ ଏଠାରେ ଯଦ ବିଜୟ ତୂଣରୁ

ଅଭିମାନ ଅନୁଚର ପ୍ରକାଶ କରଣେ;
ମାନଙ୍କ ଉଚିତ ସାଧୁ କର୍ତ୍ତବ୍ୟ କାର୍ଯ୍ୟରେ
ଅଭିମାନୀ ହେବା—ତହୁଁ ଫଳେ ମହାଫଳ
ଉଦ୍ୟମ ବସ୍ତୁରେ ଯାହା ହେଲେ ନିୟମିତ ।

ନୀଳ ।— ( କରଯୋଡ଼େ ) କହନ୍ତୁ ଉପାୟ ଆଉ ଧୈର୍ଯ୍ୟ ମାନୁ ନାହିଁ —
କିରୂପେ ଚଳିବ ଏହୁ ଶିକ୍ଷିତ-ସମାଜ ?

ବ୍ରହ୍ମା ।— ( ଗମ୍ଭୀରଭାବେ ) ନ ହୁଅ ଅଧୀର, ଶୁଣ ସୁମନ୍ତ୍ରଣା ଏହା,
ନୁହ ବିଚଳିତ କେବେ କର୍ତ୍ତବ୍ୟ-ପଥରୁ ;
କହନ୍ତି ବେଦେ ବିଧି ଅଲଙ୍ଘ୍ୟ ବଚନ ·
ସତ୍ୟଧର୍ମ ପଥୁଁ କେବେ ନୁହ ବିଚଳିତ—
ସେହି ସେ ଅଟଇ ପନ୍ଥା ବିଦ୍ୱାନ ସୁଜନ ।
ବାନ୍ଧ ସର୍ବେ ହୃଦେ ବଳ, ଚଳ ସ୍ଥିର ହୋଇ,
ଅଚଳ ପର୍ବତ ସମ କର୍ତ୍ତବ୍ୟ-ପାଳନେ
କଳିହୃଦେ ପ୍ରତିପାଦ ବେଦର ବିଧାନ
କର୍ତ୍ତବ୍ୟ-ସାଧନ ଅବା ମରଣ ପଣରେ ।
ବଜ୍ରାଙ୍କଶାଣ ଛନ୍ତି ହୃଦୟେ ତୁମ୍ଭର,
ଦେଖାଉ ଅଛନ୍ତି ବାଟ,— ନ ଡର କାହାକୁ,
ଚଳ ପ୍ରାଣପଣେ ସତ୍ୟ ଧର୍ମପଥେ ତେଜେ ।
ଏ ତେଜରେ ସୂର୍ଯ୍ୟସମ ହେବ ତୁମ୍ଭ ତେଜ—
ନଷ୍ଟ ହେବ ଅସହାୟ କ୍ଷୁଦ୍ର କୀଟ ଯେତେ—
ଅବିଦ୍ୟା-ଅନ୍ଧାର ଦେଖୁଁ ପଳାଇବ କ୍ଷଣେ ।

ଆଦ ।— ( କରଯୋଡ଼େ ) ସ୍ୱାମିନ୍ !
ଯା ବୋଇଲେ ସତ ମାତ୍ର ତେଜ ହେବ କାହୁଁ—
ଅଜାଇ ଅଡ଼ୁଆ କଥା ଲଗାନ୍ତି ସକଳେ ?

ବ୍ରହ୍ମା ।— ( ତେଜଃପୂର୍ଣ୍ଣଭାବେ ) କ ଡର କାହିଁକ ?— ଜାଣ ଶିକ୍ଷିତଜାତିରେ ।
ଜାଣେଁ ଦୂର ଜାଇ ମୁହିଁ ଦୃଢ ଓ ଏକତ—
ପାର୍ଥକ୍ୟ ଯେତିକରେ ଶିକ୍ଷା ଅଶିକ୍ଷା ଭେଦରେ ।
ଦେଖୁଛ ଉଭିଲେ, ଅଧି, ବ୍ରାହ୍ମଣେ ଯେତକ
ଧରନ୍ତି ପଇତା ମାତ୍ର କରଣ ବୈଶ୍ୟରେ
କେ ଧରେ ପଇତା କେହୁ ପଚାର ଦେଖନ୍ତି

ବିବାହ ବ୍ରତରେ ଯେନ ଅନ୍ୟ ସାଜସଜ ।
ଏ ନୁହେ ଉଚିତ—ଯେବେ ମାନିବ ମୋ କଥା—
ଧରଫେରା ସଦାବେଳେ—ଯଜ୍ଞ ସୂତ୍ର ତାହା
ଯଜମାନ-ଚିତ୍ତ ସଦା ସାଧୁ କର୍ମ ସଙ୍ଗେ
ଚଳାଇ କରିବ ଯେତେ ମଙ୍ଗଳ ବିଧାନ ।
ତାହାନ୍ତୁ ଯେ ପାଠ ପଢ଼ି ତୁମ୍ଭ ଦେଶୀ ଦେଖି
ହୋଇବେ ଉତ୍ସାହୀ ପାଠ ପଢ଼ିବାରେ ସର୍ବେ—
ଯେନବେ ପଇତା ସାଧୁ ଆଚରଣ ପାଇଁ ।
ନୁହଇ ଲୁହାର ବେଡ଼ି ସୂତା କେବେ କେଉ
ଚେତାଇବ ସଦା ହେଲେ କଢ଼ କର୍ମେ ବୀର;—
ଏକତାର ସୂକ୍ଷ୍ମ ତାହା ଲଙ୍ଘିଦେବ ହେଲେ
ଅନ୍ୟାଯ୍ୟ ଅଶୁଭ ଜାତି-ଦାସତ୍ୱ-ବନ୍ଧନ,—
ଫାଶିଛି ଏ ଜାତି-ବନ୍ଧ ଭାଙ୍ଗି ତା ଗଢ଼ିବ
ଦେଶର-ଜାତୀୟ-ବନ୍ଧ ଉଦାର ପ୍ରବଳ ।
ଦେଖିଛୁ ମୁଁ ତୁମ୍ଭ ମେଳେ ପ୍ରତ୍ୟେକ ଜାତିରେ
ଶତାଧିକ ଲୋକେ ଛନ୍ତି ଶତାଧିକ ସ୍ଥାନେ—
କ ଦଶ୍ୟ ତୁମ୍ଭର ? କେବା ଛଡ଼ାଇବ ଜାତି
ମିଳିଥିବ ଯେବେ ତୁମ୍ଭେ ଏତେଲୋକ ଦୂରେ ?
ଜାତିର ସମସ୍ୟା ବଡ଼ ଦେଖିଲି ଉତ୍କଳେ-
ସ୍ଥାନ ସ୍ଥାନ ସ୍ଥିର ମୁହିଁ କହୁଛି ଏ କଥା,
ସକଳେ ଆପଣା ଜାତି ମଧ୍ୟରେ ରହି
କ୍ରମଶଃ ଉନ୍ନତି କର ମିଳନ ଉଦ୍ଦେଶେ ।—
ତେଣୁ ଏକାବେଳେ ଆର୍ଯ୍ୟ-ସମାଜ ବସାଇ
ଉକ୍ତ ଆନ୍ଦୋଳନ ଠାରୁ ଅଟଇ ଏ ସାର,
ଆର୍ଯ୍ୟ ସମାଜର ନୀତି ଆଶ୍ରର ବ୍ୟବସ୍ଥା—
ପୂର୍ବ ଆର୍ଯ୍ୟ ଋଷିଙ୍କର ଥିଲା ଯାହା ରୀତି—
ଚଳାଇ ସୁନ୍ଦର ଚଳ—ଏକା କଥା ତାହା ।
କର ହୋମ, କର ଦୀକ୍ଷା, ଦଅ ଶିକ୍ଷା ଯେତେ,
ସାଧୁ-ସଙ୍ଗ ଶିଳ୍ପକାର୍ଯ୍ୟ ଉଠ ଯାଉ ଦେଶେ,
ରେଳକଳ ସିନ୍ଧୁପୋତ ଅଦ୍ଧାଣ-ଦମାନ

ଚଳାଅ କୌଶଳେ, ରକ୍ଷ ବେଦର ମର୍ଯ୍ୟାଦା,
ଘୁଞ୍ଚାଅ ଜନନୀ-ଦୁଃଖ ପୁଣି କର ଦେଶ ।
( ହାତ ବଢ଼ାଇଦେଇ ) ଧର ହସ୍ତ ମୋର, ସର୍ବେ କର ଏ ପ୍ରତିଜ୍ଞା,
ଦେଖିବ କେମନ୍ତ ଫଳ ହେଉଛି ଏଥିରେ ।

ବୀରେ ।—( ବ୍ରହ୍ମାନନ୍ଦ ହାତ ଧରି ) ସାର କଥା ଏହି—ଏଥୁଁ ନାହିଁ ମୋର ଆନ—
ଏ ମୋର ପ୍ରତିଜ୍ଞା—ଆଜଠାରୁ ଏହି ଧର୍ମ । (ହାତ ଛାଡ଼ିବା)

ଅକ୍ଷ ।—(ତଦ୍‌ବତ୍) ଏ ମୋର ପ୍ରତିଜ୍ଞା ସ୍ୱାମି-ଚରଣହିଁ ସାର । ( ହାତ ଛାଡ଼ିବା । )

ଅନ୍ୟସକଳେ ।—( ତଦ୍‌ବତ୍ ) କରିବୁଁ ପାଳନ ଏହା ଆଜନ୍ମ ସକଳେ ।
( ହାତ ଛାଡ଼ିବ । )

[ କୁଞ୍ଜବିହାରୀର ପ୍ରବେଶ ।

କୁଞ୍ଜ ।—( ପ୍ରଣିପାତ କରି ) ନମସ୍ତେ ସ୍ୱାମିନ୍ !

ବ୍ରହ୍ମା ।—(ନମସ୍କାର କରି) ନମସ୍ତେ ! ବସ ବସ ।—ତୁମ୍ଭେ କେଉଁଆଡ଼େ ଆସିଲ ?

କୁଞ୍ଜ ।—( ଉପବେଶନ କରି ) ଲୀଳାବତୀଙ୍କ ମାତାଙ୍କୁ ବଡ଼ ଜ୍ୱର ହୋଇଛି—ସମସ୍ତେ କହିଲେ ଆପଣ ଔଷଧ ନ ଦେଲେ ଭଲ ହେବ ନାହିଁ । ଲୀଳା-ବତୀଙ୍କ ମାତା ମଧ୍ୟ କହିଛନ୍ତି, ଆପଣତ ଅନେକଦିନ ହେଲା ଆଉ ପଦଧୂଳି ପକାଇ ନାହାନ୍ତି—ଅନୁଗ୍ରହ କରି ଥରେ ଦେଖିବାକୁ ଯିବେ ।

ବ୍ରହ୍ମା ।—( ବିଷଣ୍ଣଭାବେ ) ହେମମାଳୀଙ୍କି ଜ୍ୱର ହୋଇଛି ? କେତେଦିନ ହେଲା ? ମୁଁ ଏଣିଆଡ଼େ ଭୁଲିଛି—ଅବସର ନୋହିବାରୁ ଆଉ ଯାଇପାରିନାହିଁ ।

କୁଞ୍ଜ ।—ଜ୍ୱର ହେବା ଆଜକୁ ଚାରିଦିନ ହେଲା ।

ବ୍ରହ୍ମା ।—କି ଅନ୍ୟାୟ କଥା ! ଚାରିଦିନ ହେଲା ଜ୍ୱର ହେଲାଣି, ମୋତେ ସମ୍ବାଦ ଦେଲ ନାହିଁ !—ଆଚ୍ଛା ତୁମ୍ଭେ ଯାଅ, ମୁଁ ହୋମଦ୍ରବ୍ୟ ସବୁ ରଖି-ଦେଇ ଯାଉଛି ।

ଶୀଳ ।—ଆଜ୍ଞା ହେଲେ ଆମ୍ଭେମାନେ ସମସ୍ତେ ଯିବୁଁ ।

ବ୍ରହ୍ମା ।—ହେଉ ଆସ, ମାତ୍ର ଯେତେଦିନ ମୁଁ ଏଠାରେ ଥିବି ପ୍ରତ୍ୟହ ସନ୍ଧ୍ୟାସମ-ୟରେ ଏଠାକୁ ଆସି ବେଦାର୍ଥ ଶୁଣିବ; ଏଥିରେ କାହାର ଯେମନ୍ତ ହେଳା ନ ହୁଏ ।

ଶି: ସ: ସମସ୍ତେ ।—ଏଥିରେ କେହି ତ୍ରୁଟି ନ କରିବୁଁ ।—ନମସ୍ତେ ( ହାତ ଉଠାଇ ନମସ୍କାର କରଣ ) !

ବ୍ରହ୍ମା ।—( ହାତ ଉଠାଇ ) ନମସ୍ତେ ! ନମସ୍ତେ ! ନମସ୍ତେ !

କୁଞ୍ଜ ।—ମୁଁ ଯାଉଛି—ନମସ୍ତେ ( ପ୍ରଣିପାତ କରଣ ) !!

ବୃଦ୍ଧା ।—( ହାତ ଉଠାଇ ) ନମସ୍ତେ ! ତୁମ୍ଭେ ଆଗେ ଆଗେ ଚଲ—ମୁ ଏହି
ବାହାରିଲି । ( ଉଠି ଦଣ୍ଡାୟମାନ ) ।

[ ଅନ୍ୟ ସମସ୍ତଙ୍କର ପ୍ରସ୍ଥାନ ।

( ଅନ୍ୟ ପାର୍ଶ୍ୱାଦ କୁଟୀରରେ ରହି ) ଘୋର ଶୋକ ସଂସାରରେ ପୁଣ୍ୟସମ୍ପର୍କି ପର
ଲଗି ରହିଛ ! ଯାଏଁ ଦେଖି ଆସେଁ—ମନ ବଡ଼ ଧାନ୍ଧି ହେଉଛି.! ( ପ୍ରସ୍ଥାନ । )

ପଟ-ପରିବର୍ତ୍ତନ ।

—∘❋§⁂§❋∘—

ଦ୍ୱିତୀୟ ଦୃଶ୍ୟ । ଶୟନ-କକ୍ଷ ।

[ଶଯ୍ୟୋପରି ହେମମାଳୀ ଶାୟିତା ଓ ପାର୍ଶ୍ୱେ ଲୀଳାବତୀ ବସି ହାତ ଆଉଁସିବ
ଲୀଳା ।—ବୋଉ, ତୁ ଏତେ ବ୍ୟସ୍ତ କାହିଁକି ହେଉଚୁ—ତୋ ଦେହ
କାଲିଠାରୁ ଗମ୍ଭୀର ଜ୍ୱରର ତୋ ପାଇଁକି ଗଲା ନାହ
ଟୋପାଏ ଗୁଣ୍ଡା ଖୋଇଲୁ ନାହିଁ—ତୁ ବଞ୍ଚିବୁ କିପରି
ହେମ ।—ଲୀଳା, ମୋ ଦୁଃଖୀଧନ—ମୋ ରଙ୍କସର୍
ଆଉ ଟିକିଏ ମୋ ପାଖରୁ ଦୂର ହେ ବସ, ମୁଁ
ଶୁଣିଥାଏଁ ଭଲ ।
ଲୀଳା ।—(ହେମମାଳୀ ଆଡ଼ରୁ ଆସ୍ତର ଆଉଜିବସି
ଦେହ କାହିଁକି ହଣ ହେଇ ଯାଉଚି ?
ହେମ ।—( ଥରେ ହାତ ଉଲକୁ ପଢ଼ାଠ
ତୋତେ ଦେଖି ତୋ
ଲଉଡ଼ିପରି
ହେଲ୍ଲ ଦ
ଘରେ
ଷାଠ
ସଂସା
ଠାଆ
ଯାଉ
କହ

ଲୀଳା ।—( ଚକ୍ଷୁ ଛଳ ଛଳ କରି ଗଦଗଦ ସ୍ୱରେ ) ବୋଉ ! ଏମିତି କଥା କାହିଁକି
କହୁଛୁ ? ତୁ ଏଭଳି କଥା କେବେ କହୁ ନ ଥିଲୁ—ଆଜି କାହିଁକି
ଚ ଧରଣର କଥା ମୁଖରେ ଧରୁଛୁ ?—ଭବ ସଂସାରରେ ମୋର ସାହା-
ଭରସା,—ତୁ ଛାଡ଼ିଗଲେ ମୁଁ କାହାକୁ ଆଶା କରି ରହିବି ?

ହେମ ।—ଲୀଳା, ତୁ ମୋର ଗଣ୍ଠିଧନ ! ବେଳ ବୋଲି ମୋ ମୁହଁ ପାଖକୁ ମୁହଁ
ଆଣିଲୁ, ମୋ ମାଟି !

ଲୀଳା ।—( ହେମମାଳୀ ମୁଖ ନିକଟକୁ ମୁଖ ନେବା । )

ହେମ ।—( ଧୀରେ ମୁଖରେ ସ୍ନେହଭରେ ଚୁମ୍ବ ଦେଇ ) ମୋର ପ୍ରାଣ ଶୀତଳ
ହେଲା ! ଲୀଳା, ଭଗବାନଙ୍କର କିଛି ଏହିପରି ଲୀଳା ଜଗତ ! କେତେ
ଖେଳୁଛ, କେତେ ହସୁଛ, କେତେ କାନ୍ଦୁଛ, କେତେ କଷ୍ଟ ସହୁଥାଇ କରୁଛ—
କେତେ ସଂସାରରୁ ଚାଲି ଯାଉଛ । ସେଉଁ ଲୀଳାରେ ମୋତେ ବୋଧ
ଦେବାପାଇଁ ତୁ ଆସିଥିଲୁ—ସେହି ଲୀଳା—ସେହି ଲୀଳା ହେଉ ତୋତେ
ଲୀଳାବତୀ ନାଁ ଦେଇଥିଲି । ସେହି ଲୀଳାରେ ତୋ ବାପ ଦେଖୁଁ ଦେଖୁଁ
ଚାଲିଗଲେ—ସେହି ଲୀଳାରେ ମତେ ଏବେ ଡାକରା ଆସିଛି । ଲୀଳାମୟ
ଗବାନ୍ !—ତାଙ୍କ ଲୀଳା ଭେଦେ—ଏବେ ଏକା କରିବାକୁ ପଡ଼ିବ !-
କାହିଁ—ଲୁଣ୍ଠ ତୋର ବାପଘର, କାହିଁ ତୋର ମା—ତୋର
ଲେ ବୋଉ !—ଗୁମାସ୍ତା କାହାନ୍ତି ?

[ ଜମାଜଲଭାର ପ୍ରବେଶ ।

ଘର ଅଛୁ ?
ବୋଉ—ଦେଖ ନା ସେ ବାମ୍ଭଣୀଘର କଣ ଗୁଡ଼ାଏ
ଅଛରେକ !
ି ଗୋଡ଼ ଆଉଁସି ଦେଉ ) ନାନି ! ତୁମେ
ଛୁଚ କି ?
କଥା—ଲୀଳାକୁ ବୁଝାଇ ଦିଅ
ଗୁମାସ୍ତା ଲୁଅଡ଼େ ଗଲେ ?
ହୋଇଥିଲା, ମୁଁ କହିଲି
ାଲୀକିଛରେ ଖାଇ
ୁଣ୍ଡା ପାଟିକି ନେଲେ
ାକୁଅରୁ ଉଠି ପାଣ
ଇ କହିଲେ କହିବ

ହେମ ।— ଆହା ! ଆଉ ଜନ୍ମରେ ଗୁମାସ୍ତା ମୋର ଆପଣାର ବାପ ଥିଲେ — ଏ ଜନ୍ମରେ ମୋର ବାପଠୁ ବଳି କାମ କରୁଛନ୍ତି । ସେ ପରା ଗୁମାସ୍ତାଙ୍କ ଭିତରେ ରହି—ସରଲୁ ଯେମନ୍ତ ବାହାରକୁ ବି ତେମନ୍ତ । ଲୀଳାବାପ ଗଲାଦିନ ସେ ମତେ ବାପ ପରି ଯେତେ ବୋଧ ଦେଇଛନ୍ତି—ସବୁ ମୋ ମନେ ଅଛି—ସବୁ ଆଜ ମୋ ଆଖିରେ ନାଚୁଛି । ମତେ ଯେଉଁପରି ବାପଭଳି ଜଣେଇ ଦେଲେ—ମୋ ଲୀଳାକୁବି ସେହିପରି ଜଣେଇବେ ।

ଲୀଳା ।— (ଜନକଜଲଗାକୁ ଅନାଇ) ଦେଖ ! ଫେରେ ବୋଉ ଏଣ୍ଡ ରେଣୁ ବଳୁଛି ।

ଜଗ ।— ନାଇ, ଭୁଜନ୍ତୁଅ – ଏ ରଙ୍ଗ କଥା କହିଲେ ଲୀଳା ମନରେ ପର ଦୁଃଖ ହଉଛି !—ଲୀଳା ପରା ଅବୋଧ ପିଲା !

ହେମ ।— ଅବୋଧ — ସତ ।— ଦୁଃଖ ହବ ? ଦୁଃଖ ଯେମିତି ନ ହବ — ମୁଁ ପରା ଦୁହାଁଇ କହୁଛି ! — ସବୁ ଈଶ୍ୱରଙ୍କ ଇଚ୍ଛା ! — ଗୁମାସ୍ତା ଅଇଲେ — ସ୍ୱାମୀ ଅଇଲେ — ( ଦୀର୍ଘ ନିଶ୍ୱାସ ତ୍ୟାଗକରି ) ଉଃ !

[ କୃଷ୍ଣଦେବ ଘର ପ୍ରବେଶ ।

ଲୀଳା ।— ହେଇ ବୋଉ ଗୁମାସ୍ତାଏ ଅଇଲେଣି ! (କୃଷ୍ଣକୁ ଅନାଇ) ସ୍ୱାମୀଜୀ କଣ କହିଲେ ?

ହେମ ।— କଣ କହିଲେ ?

କୃଷ୍ଣ ।— ଆସୁଛନ୍ତି । ଅନେକ ଲୋକ ଗୁଣ୍ଡ ହୋଇଥିଲେ — ହୋମ ସାର ତାଙ୍କ ସଙ୍ଗେ କଥା ବାର୍ତ୍ତା ଚଳିଥିଲା, ମୁଁ ଯେମନ୍ତ କହିଲି ତେମନ୍ତ ସମସ୍ତଙ୍କୁ ବିଦା ଦେଇ ହୋମ ପାଞ୍ଚଆଡ ଥୋଇ ଦେଇ ଆସୁଛନ୍ତି ବୋଲି କହି ମୋତେ ଆଗେ ଆଗେ ପଠାଇ ଦେଲେ ।

ହେମ ।— କି କଥା ପଡ଼ିଥିଲା ? - କିଛି ଶୁଣିଲ ? - କିସ ।

କୃଷ୍ଣ ।— କିପରି ଦେଶର ଭଲ ହେବ, କିପରି ଲୋକେ ସୁଖରେ ରହିବେ ତାଙ୍କର ସବୁବେଳେ ସେହି ଚର୍ଚ୍ଚା । ( ଉପବେଶନ କରି ) ମୁଁ ପହୁଞ୍ଚି ବାର୍ତ୍ତ ଦେଲାକୁ ସେ କଥା ସବୁ ବନ୍ଦ ହୋଇଗଲା ।

ହେମ ।— ମୋର ଲୀଳା କଥା କିଛି କହୁଥିଲେ ? ଏବେ ସେ ଭଲ ବାଟ ଦେଖାଇ ଲୀଳାକୁ ଚଳେଇବେ—( କ୍ଷୀଣସ୍ୱରରେ ) ମୁଁତ ବାହାରିଲି ( ଦୀର୍ଘନିଶ୍ୱାସ ପ୍ରକ୍ଷେପଣ )

ଲୀଳା ।— ଦେଖ !—

ହେମ ।— କଣ ଆଉ ଦେଖିବୁ ଲୀଳା — ଏହି ଲୀଳା — ଜଗତରେ ଲାଗିଛି ! ଜନ୍ମ ଲାଗିଛି — ଜନ୍ମ ଯିବା ଆସିବା ଲାଗିଛି ! କେହି ଚିରଦିନ ଥାଇଁ

ଆସି ନାହିଁ — କେହି ଚଉକିଦାର ରହିବେ ନାହିଁ ! — ତୁ ଆଉ ପାଣି ଦେଲେ, ବୁଝିଲ ନଲେ—ନ ଅଣ ଦେବ ! — (ହଠାତ୍ ମୁଣ୍ଡ ଚଉକୀରୁ ତଳକୁ ଖସି ପଡ଼ିବା ।)

ଲୀଳା ।— (ଜାକ୍ ହୋଇ) ଏ କିଣ ! ବୋଉ ମୁଣ୍ଡ କାହିଁକି ତଳକୁ ଖସି ପଡ଼ିଲା ?

ଲୁଛ ।— ପାଣି ଆଣ, ପାଣି ଆଣ ! ( ନିକଟକୁ ଆସି ହେମମାଳୀର ମୁଖ ଦେଖି ) ମୂର୍ଚ୍ଛା ତ ହୋଇ ଗଲା — ପାଣି ଆଣ !

[ ନନ୍ଦଲାଲର ବେଗେ ଉଠି ପ୍ରସ୍ଥାନ ।

( ନାକ ଫୁଙ୍କି ଫୁଙ୍କି ) ମୂର୍ଚ୍ଛା କାହିଁକି ହେଲା ?

ଲୀଳା ।— କାଲିଠୁଁ ତା ପେଟରେ ଗଣ୍ଡାଏ ଦାନା ପଡ଼ିନାହିଁ ।

[ ଦାସୀ ସହିତ ନନ୍ଦଲାଲର ଜଳପାତ୍ର ନେଇ ପ୍ରବେଶ ।

ନନ୍ଦ ।— ( ପାତ୍ରରୁ ଜଳ ନେଇ ହେମମାଳୀର ମୁଖରେ ସେଚନ । )

ହେମ ।— ଉଃ ! — ଉଃ !

ନନ୍ଦ ।— ( ହେମମାଳୀ ମୁଣ୍ଡ ତକିଆ ଉପରକୁ ରଖି ) ଅସ୍ଥ ହୁଅ — ଏତେ ବ୍ୟସ୍ତ ହେଲେ କପରି ଚଳିବ !

ହେମ ।— ( କ୍ଷୀଣସ୍ୱରରେ ) ଆଉ ଅନ୍ୟ ! — ସ୍ୱାମୀ ଆଇଲେଣି — ମୁଁ ତାଙ୍କର ପାଇଁ ଫେରି ଆସିଲି ।

[ ବ୍ରହ୍ମାନନ୍ଦ ସ୍ୱାମିଙ୍କ ପ୍ରବେଶ ।

ବ୍ରହ୍ମା ।— ସତ୍ୟ ଜଗଦୀଶ ଓଁ ! — ମା କପରି ଅଛ ?

ହେମ ।— ମୋ ଜୀବନ ଆସ — ସ୍ୱାମୀଜି, ତୁମେ ମୋର ବାପ ।

ବ୍ରହ୍ମା ।— (ନିକଟରେ ଉପବିଷ୍ଟ ହୋଇ ନାଡ଼ୀ ଦେଖି କପାଳରେ ହାତ ବୁଲାଇ) ବଡ଼ ଦୁର୍ଦ୍ଦମ ଅବସ୍ଥା ! — ଗୋଟିଏ ପଥୁରି ଗିନାରେ ଟିକିଏ ମହୁ ଆଣିବ ?

ଲୀଳା ।— ( ଦାସୀକୁ ଅନାଇ ) ବେଗେ ପଥୁରିରେ ମହୁ ଆଣ !

[ ଦାସୀର ପ୍ରସ୍ଥାନ ।

ବ୍ରହ୍ମା ।— କିଛି ଖାଇଛନ୍ତି ?

ଲୀଳା ।— ପରଅର ଦିନ ଗ୍ରାସେ ଖାଇଥିଲେ — ନାଇ ମନାକଲେ । ବଳେଇ ବଳେଇ ଦୁଧ ଟୋପିଏ ନାଲି ଦେଇଥିଲୁଁ — ଅଜ ଗଳାରେ ଗଳିଲା ନାହିଁ ।

[ ପଥୁରିରେ ମହୁ ନେଇ ଦାସୀର ପ୍ରବେଶ ।

ଦାସୀ ।— ( ବ୍ରହ୍ମାନନ୍ଦଙ୍କୁ ଦେଇ ) ଏତିକି ମହୁ ହେବ ?

ବ୍ରହ୍ମା ।— ବହୁତ — ଆଉ ପ୍ରୟୋଜନ ନାହିଁ ! ( ଝୁଲିରୁ ଔଷଧ ବାହାରି କରି ମହୁରେ ମିଶାଇ ହେମମାଳୀ ମୁଖ ନିକଟକୁ ଧରି ) ଏହାକୁ ଚାଟିଦିଅ ।

ହେମ ।— ( ଧୀରେ ଔଷଧ ଗ୍ରହି ) ଓଃ ! ଟିକିଏ ପ୍ରାଣ ସୁସ୍ଥ ହେଲା । ସ୍ୱାମୀଜି ମତେ ଦେଖିଲ ?

ବୃଦ୍ଧା ।— ଦେଖିଲକି ଔଷଧ ଦେଇ ସବୁ ?

ହେମ ।— ହଁ-ଔଷଧର ହେଲ-ମତେ ଦେଖିଲେ ? ଯେତେବେଳଯାଏ ଔଷଧର ବଳ ଅଛି ସେତେବେଳ ମୋ ମନର କଥା ପିଟେଇ କହନ୍ତୁ ।—ମୁଁ ଅବୋଧ ଲୀଳାକୁ ବୁଝାଉଥିଲି ତା ମନ ମାନୁନାହିଁ ।

ବୃଦ୍ଧା ।— ତୁମେ ଟିକିଏ ଧୈର୍ଯ୍ୟ ଧର ।

ହେମ ।— ସ୍ୱାମୀଜି— ମୋର ବାଣ—ମୁଁ ଆଉ ସୁସ୍ଥ ହେବି କଅଣ ?- ଏତେବେଳକେ ଶାନ୍ତିଧାମକୁ ଯାଇ ମୋତେ ଶାନ୍ତି ମିଳିବ ।

ଲୀଳା ।— ଦେଖନ୍ତୁ ସ୍ୱାମୀଜି, ( ବ୍ୟଗ୍ରସ୍ୱରେ ) ଆଜି ସକାଳୁଁ ଏହିପରି ବାରମ୍ବାର ମରଣ କଥା କହୁଛି ।

ହେମ ।— ଆଜି ସକାଳୁ—ଆଜି ସକାଳୁ ମୁଁ ଜାଣିଲି ମୋତେ ତୋ ବାପଙ୍କ ପାଖକୁ ଯିବାକୁ ହେବ —ଡାକରା ଆସିଲାଣି । ଲୀଳା, ତୁ ମୋ କଥା ମାନ ! ଏ ସଂସାର ବଡ଼ ବିଷମ-- ଖଣ୍ଡାଧାରରେ ସଂସାରରେ ବାଟ ଚାଲିବାକୁ ହେବ । ତୁ ମୋର ଲକ୍ଷ୍ମୀ ଝିଅଟି ସବୁ ! ତୋପରି ଗୁଣବତୀ ଝିଅ ମୁଁ କେତେ ଗାଁ ବୁଲିଛି କେଉଁଠି ଦେଖିନାହିଁ । ଏ ଯେ ଅତୁଳନୀୟ ସମ୍ପତ୍ତି ରହିଲା ସ୍ୱାମୀଜିଙ୍କ ପରାମର୍ଶ ନେଇ ଖର୍ଚ୍ଚ କରିବୁ ।—ଏ ଗୁମାସ୍ତା ତୋର ବାପପର । ମୁଁ ଜାଣେ ମୁଁ ଥିଲେ କି ଥିଲେ ସେ ଏହାଭଳି ଚଳାଇବେ । ତୋର ଜୀବନ ପରର ଉପକାର ପାଇଁ । ପରର ଉପକାର ଯହିଁରେ ଭଲରୂପେ ହେବ, ଯହିଁରେ ଭଲ ମନ୍ଦ ତୁ ଭଲରୂପେ ବୁଝିପାରିବୁ—ସେଥିପାଇଁ ତତେ ମୁଁ ପାଠ ପଢ଼େଇଛି—ତାହାକୁ ନ ଭୁଲି ନୀତିରେ ସ୍ନେହରେ ପାରୁପର-ଯତ୍ନେ ପଢ଼େଇଛି । ଦେଶ ଲୋକଙ୍କର ଯହିଁରେ ଭଲ ହେବ—ଦେଶ ଲୋକେ ଶେଷଠୁଁ ବଡ଼ଯାଏ ଯେପରି ପାଠ ପଢ଼ି ମନୁଷ୍ୟ ହେବେ, ଯେପରି ହାକିମ ହୁକୁମା ଦରବାରରେ ବସି ଦେଶକୁ ଉଜ୍ଜ୍ୱଳ କରିବେ, ସେହି-ଆଡ଼କୁ ଦୃଷ୍ଟି ରଖି ଚଳିବୁ । ତୁ ଚିନ୍ତାକରନା—ସ୍ୱାମୀ ପରମଜ୍ଞାନୀ—ସେ ତୋତେ ବୁଦ୍ଧି ଦେବେ, ତତେ ପରାମର୍ଶ ଦେବେ ।—ତାଙ୍କ କଥାରୁ ଭଲେ ଅନ୍ତର ହେବୁନାହିଁ । ତୁତ ଜାଣୁ ଏ ଜୀବନ ଉପରେ କାହାର ଅଧିକାର ନାହିଁ—ଦେଖିଛୁତ ତୋ ବାପ ଗଲାବେଳେ ଅନାଉ ଅନାଉ ଶ୍ୱାସ ଛାଡ଼ିଗଲେ—ସବୁ ଛାଡ଼ି ଚାଲିଗଲେ ! ସମସ୍ତେ ସେହିପରି ଦିନେ ଚାଲି-ଯିବେ । ପତି, ଧନ, ଦାସ, ସୁତ, ଘର, ବନ୍ଧୁ ନେହ ଅଟକେଇ ରଖି-

ପାରିବେ ନାହିଁ ।—ଲୀଳା—ମୋତେ ଧର—ଉଠା—ମୁଁ ତୋ କୋଳରେ ଟିକିଏ ମୁଣ୍ଡ ଦେଇ ଶୁଏଁ ।

ଲୀଳା ।— ( ଧୀରେ ୨ ହେମମାଳୀର ମୁଣ୍ଡ ଉଠାଇ ଆପଣା କୋଡ଼ରେ ରଖି ବସ୍ତ୍ରାଞ୍ଚଳରେ ନିଜର ଲୋତକ ମୋଚନ । )

ହେମ ।— ଲୀଳା—ତୁ କାନ୍ଦୁଚୁ ! ଛିନ ହୋ !—ସ୍ୱାମୀଜି, ଲୀଳା କାନ୍ଦୁଛି—ବିଧାତା ତାକୁ କାନ୍ଦିବାକୁ କରିଛି ! ଯେ କଷ୍ଟ ବୁଝେନାହିଁ—ବଡ଼ ଅବୁଝା ! ତୁମେ ଏଥିର ଭାର ଭଲମନ୍ଦର ଦାୟୀ । ଏ ଧନସମ୍ପତ୍ତିର ମାଲିକ ସେ—ତାକୁ ତୁମ ଜିମା କରିଦେଲି । ମୋର ଶେଷ ନିବେଦନ ଏ ଧନସମ୍ପତ୍ତି ଯେପରି ପରର ଉପକାରରେ—ଦେଶର ଉପକାରରେ ଲାଗେ ସେହିପରି କରିବେ । ଆମଜାତି ଲୋକେ ବଡ଼ ନିର୍ବୋଧ—ବଡ଼ ପାଷଣ୍ଡ । ଭଲକଥା ତାଙ୍କ ଆଖିକି ଯାଏନାହିଁ । ପରର ମନ୍ଦ—ପରର ଅନିଷ୍ଟ—ସବୁବେଳେ ସେହିକଥା—ପାଠପଢ଼ା ଆଡ଼କୁ ମନ ନାହିଁ । ଉନ୍ନତି କଲେ ଅଡ଼ୁଆ ଭିଆଇ ଅନିଷ୍ଟ କରୁଛନ୍ତି । ଆଠଦିନ ତଳେ ଶାସ୍ତ୍ରକଥା—ବେଦ କଥାମାନେ କହୁଥିଲ ବେଳେ ମୁଁ ଲୁଚିକରି ତୁମକୁ ଯେଉଁକଥା କହିଚ ତାହା ମନେ ରଖିଥିବ—ମୋର ସେହି ବାଞ୍ଛା —ଈଶ୍ୱରଙ୍କ କଥା ସତ୍ୟ, ବେଦ ସତ୍ୟ—ତାଙ୍କ ଆଜ୍ଞାପାଳନ ସତ୍ୟଧର୍ମ—ତାହିଁ ସ୍ୱର୍ଗ !—ଉଃ ! ତେଣ୍ଟି ଶୁଖିଯାଉଛି—ମତେ ଟୋପାଏ ପାଣି ଦିଅ ।

ଲୀଳା ।— ( ଦାସୀକି ଅନାଇ କ୍ରନ୍ଦନସ୍ୱରେ ) ମୋ' ହାତକୁ ଟିକିଏ ପାଣି ଦିଅ !

ଦାସୀ ।— ( ଲୋଟାରୁ ପାଣି ନେଇ ଲୀଳାବତୀର ହସ୍ତରେ ପ୍ରଦାନ । )

ଲୀଳା ।— ( ଧୀରେ ୨ ହେମମାଳୀର ମୁଖରେ ଜଳ ପ୍ରଦାନ । )

ହେମ ।— (କଷ୍ଟରୁ ଚେଷ୍ଟାରେ) ଲୀଳା—ଉଃ-ମୁଁ ବାହାରିଲି ! (ବେକ ମୋଡ଼ିଦେବ)

ଲୀଳା ।— ( ଉଚ୍ଚସ୍ୱରେ କାନ୍ଦି ) ଏ କଅଣ !—ବୋଉ ମୋର ବେକ ମୋଡ଼ିଦେଉଛ କାହିଁକି ?

ବୃନ୍ଦା ।— (ହାତ ଦେଖି) ସର୍ବନାଶ !--ସବୁ ସରିଲା ! ଜଗନ୍ନାଥ ହେ ! ଆଉ ଜୀବ ନାହିଁ ।

ଲୀଳା ।— (ଅତ୍ୟନ୍ତ କ୍ରନ୍ଦନସ୍ୱରେ) ମୋ ବୋଉଲୋ !—ମୁଁ ଆଉ କାହା ମୁହଁ ଚାହିଁ ବଞ୍ଚିବି ଲୋ—ମୋ ବୋଉଲୋ !— ( ହେମମାଳୀର ମୁଖ ଉପରେ ମୁଖ ରଖିବା । )

ବୃନ୍ଦା ।—(କାନ୍ଦି ୨) ସବୁତ ସରିଲା !—ଆଉ କାନ୍ଦିଲେ କଅଣ ହେବ !--ଲୀଳାକୁ ଧର ।

ଜନ ।— (ଉଚ୍ଚସ୍ୱରେ କାନ୍ଦି) ମୋ ଲୀଳା ଲୋ— ତୋ କପାଳରେ ଅଦୃଷ୍ଟ ଏହା ଥିଲା ଲୋ !— ହା ! ହା !

[ ନରେନ୍ଦ୍ର, ଅକ୍ଷୟ, ଆନନ୍ଦ ଓ ନୀଳକଣ୍ଠର ପ୍ରବେଶ ।

ନରେ ।— ଏ କି ଘଟଣା ?

କୁଞ୍ଜ ।— ହେମମାଳୀଙ୍କ ଝିଆର ସଇଲା ।

ନୀଳ ।— ଓଃ ! କି ଦୁର୍ଦ୍ଦୈବ ! ଯାହା ହେବାର ହେଲାଣି । ଦାସୀ ଓ କୁମ୍ଭ ଭାର୍ଯ୍ୟା ଲୀଳାବତୀଙ୍କି ଧରନ୍ତୁ । ଆଉ ଶବ ଏଠାରେ ରଖିବା ଉଚିତ ନୁହେଁ— ଧରାଧରି କରି ବାହାରକୁ ନିଅ ।

[ କନକଲତା ଓ ଦାସୀ ଲୀଳାବତୀଙ୍କ ଧରି ଓ ଅନ୍ୟ ସମସ୍ତେ ଶଯ୍ୟା ସହିତ ହେମମାଳୀଙ୍କ ପ୍ରେତ ପ୍ରସ୍ଥାନ ଏବଂ ଅଦୃଷ୍ଟକୁମାରୀମାନଙ୍କର ଗୀତ ଗାଉଁ୨ ପ୍ରବେଶ ।

ଅ: କୁ: ।— ( ନୃତ୍ୟସହିତ ଗୀତ । )

ରାଗିଣୀ ମୂଲତାନ । ତାଳ କବାଲି ।

ଭବେ ଲୀଳା କରିଛୁ ଦେଖ ଏସନ ।
କେବେ ମଙ୍ଗଳଛଳରେ ବିହାଏ ଅକାଳେ ଶମନ । ଘୋଷା ।
କରିଲେ କଷ୍ଟେ ମରଣ କ ମାନେ ତାହା ବାରଣ,—
ଥାଏ ସନବାଳ ଯେନ୍ତୁ ଅଛ ଚରଣ । ୧ ।
କେନ୍ତୁ ଭବେ ଅସହାୟ, କେବା କରେ ହାୟ ହାୟ,—
କେ ସୁଖଶେଯରେ ଦେଖେ ସ୍ୱର୍ଗସ୍ୱପନ,—
କ ମାନଇ ଯମ ଭାର ଅଟଳ ପଣ ।
ପାଅ ଦଶା ଯେବେ ଯାହା ମନେ ମାନ ନିଅ ତାହା
କର୍ତ୍ତବ୍ୟ-ପାଳନେ କର ଈଶ୍ୱର-ସ୍ମରଣ । ୨ ।

ଯ ବ ନି କା ପ ତ ନ ।



# ତୃତୀୟ ଅଭିନୟ ।

## ପ୍ରଥମ ଦୃଶ୍ୟ । ଅଭ୍ୟର୍ଥନା-ସଭା ।

[ ସୁସଜ୍ଜିତ ସଭାସ୍ଥଳର ଉଭୟ ପାର୍ଶ୍ୱରେ ଚୌକି ସୁରକ୍ଷିତ ଓ ତହିଁରେ ନରେନ୍ଦ୍ର, ଅକ୍ଷୟ, ନୀଳକଣ୍ଠ, ଆନନ୍ଦ ପ୍ରଭୃତି ଶିକ୍ଷିତ ଯୁବକବୃନ୍ଦ ତଥା ସମ୍ଭ୍ରାନ୍ତ ଜମିଦାର ଓ ବଣିକ ବ୍ୟକ୍ତି ଏବଂ ବ୍ରହ୍ମାନନ୍ଦ ସ୍ୱାମୀ ଓ ବିଶ୍ୱମ୍ଭର ପ୍ରଭୃତି ପଣ୍ଡିତବର୍ଗ ଆସୀନ; ମଧ୍ୟ ଭାଗରେ ସୁସଜ୍ଜିତ ମେଜ ଉପରେ ରୌପ୍ୟାଧାର ଓ ଅଭିନନ୍ଦନ ପତ୍ରବଟ୍ଟା ଓ ପାର୍ଶ୍ୱରେ ସୁଶୋଭିତ ଚୌକି ସୁରକ୍ଷିତ ଏବଂ ବୈଷ୍ଣବ ମେଜ ନିକଟରେ ଦଣ୍ଡାୟମାନ । ]

ବୈଷ୍ଣ ।— (ରୌପ୍ୟାଧାର ଉଠାଇନେଇ ଦେଖି) ଆଗେ ଅଭିନନ୍ଦନ ପତ୍ର ଦେବା-ସକାଶେ କଲିକତାରୁ ରୂପାକୁଅଁ ବାଉଁଶ ନଳୀ ଆସୁଥିଲା— ପଇସା ନେଇ କେତେ ଠକା ଠକୁଥିଲେ !

ନରେ ।— ଆପଣା ଦେଶର କାରିଗରଙ୍କୁ ନ ପଚାରିବାରୁ ପର ଠକଠାକ ଖାଉ-ଥିଲେ । ଗାଁ କନିଆ ସିଙ୍ଘାଣିନାକି ।

ବୈଷ୍ଣ ।— ଯାହା କହିଲ ଠିକ୍,— ତେବେ ଗୋଟିଏ ଦୋଷ ଥିଲା ଯେ ସୁରୁଚିସମ୍ପନ୍ନ ଦ୍ରବ୍ୟଟା ଠିକ୍‌ରୂପେ ଗଢ଼ି ପୂର୍ତ୍ତି ଫଳକ ଦେଇ ଜାଣୁ ନ ଥିଲେ । ଏବେ ଦେଶର ବଣିକ ଲୋକେ ବଜାର ଯାଇଁ ବଡ଼ଯତ୍ନ ବୁଦ୍ଧିରେ ଯେଉଁ ଫଳକଟା ଦେଉଛନ୍ତି ତାହା ବଜାର ଦାମକୁ ବାଜି ମାରୁଛି— ଅନେକ ବଡ଼ ବଡ଼ ସାହେବମାନେ ଦେଖି ଚମକି ପଡ଼ୁଛନ୍ତି — ଦେଶର ଏ ଫଳକରେ ଆଖି ଝଲସି ଯାଉନାହିଁ ?

ନରେ ।— ଠିକ୍ ଠିକ୍ । ଏବା ଭାରତବର୍ଷ ମଧ୍ୟରେ ରୂପାର ତାରକସି କାମରେ କଟକକୁ କେହି ସରି ନୁହେଁ— ଏବେ ପୃଥିବୀ ମଧ୍ୟରେ ତାହା ମୁଣ୍ଡ ଟେକୁଛି ।— ଦଅ ସମସ୍ତଙ୍କୁ ଦେଖାଇ ଦେବା ।

ବୈଷ୍ଣ ।— ହଁ (ଜେବରୁ ଘଡ଼ି ବାହାରକରି ଦେଖି) ଆଉ ଦଶ ମିନିଟ ସମୟ ବାକି ଅଛି, ଇତିମଧ୍ୟରେ ସମସ୍ତଙ୍କୁ ଦେଖାଇ ନିଅ । ( ନରେନ୍ଦ୍ର ହାତକୁ ରୌପ୍ୟାଧାର ବଢ଼ାଇ ଦେବା । )

ନରେ ।— ( ରୌପ୍ୟାଧାର ନେଇ ) ଚମତ୍କାର ହୋଇଛି ( ଏହା କହି ସମସ୍ତଙ୍କୁ ଦେଖାଇବା ) ।

ବୈଷ୍ଣ ।— ଅଭିନନ୍ଦନ ପତ୍ର ମଧ୍ୟ ‹ଭେଲବେଟ୍'ରେ ବାନ୍ଧିଦେବା ଉଚିତ— ପଛକୁ ଗୋଲ ହେବ ।

ନୀଳ ।— (ଉଠିଯାଇ) ମୁଁ ନାନ୍ଦି ଦେଉଛି । (ମେଜ ଉପରୁ କେତେକ ଅଭିନନ୍ଦନ ପତ୍ର ନେଇ ସଭାସ୍ଥ ସମସ୍ତଙ୍କୁ ଶଣ୍ଟେଂ ପ୍ରଦାନ । )

ବୈଷ୍ଣ ।— ପ୍ରଥମେ ସ୍ୱାମୀଜି ବେଦ ମନ୍ତ୍ରରେ ଈଶ୍ୱରଙ୍କ ନାମୋଚ୍ଚାରଣ ଓ ସ୍ତୁତିବାଚନ କରିବେ; ତତ୍ପରେ ଅଭିନନ୍ଦନ ପତ୍ର ପଢ଼ାଯିବ ।— ପଢ଼ିବ କିଏ ?

ନୀଳ ।— ଆପଣ ସମସ୍ତଙ୍କଠାରୁ ବିଶ୍ୱବିଦ୍ୟାଳୟର ଅଭିଜ୍ଞ ଉପାଧ୍ୟାୟ— ସେ ଅଭିନନ୍ଦନ ପତ୍ର ପାଠ କରିବେ ।

ବୈଷ୍ଣ ।— ଯଥାର୍ଥ କଥା—ଏ ବିଷୟରେ ମୋର ବିଶେଷ ଆନନ୍ଦ ହେଲା । ଦେଶ-ବାସୀ ସମସ୍ତ ଲୋକଙ୍କୁ ଆପଣାର ମଣି ଏକତାସୂତ୍ରରେ ଆବଦ୍ଧ ହୋଇ ଉନ୍ନତିମାର୍ଗରେ ଅଗ୍ରସର ହେବା ଯେମନ୍ତ ଉଦାରତାର ପରିଚାୟକ ତେମନ୍ତ ଶୁଭଫଳଦାୟୀ । ଶିକ୍ଷିତ ଯୁବକମାନଙ୍କ ମଧ୍ୟରେ ଏହିପରି ମେଳ ଚିରକାଳ ଜାଗ୍ରତ ଥାଉ ଏହାହିଁ ଜଗଦୀଶ୍ୱରଙ୍କଠାରେ ପ୍ରାର୍ଥନା । ( ଗିରେନ୍ଦ୍ରଙ୍କୁ କ୍ଷୀଣସ୍ୱରରେ ) ଆଚ୍ଛା, ପଣ୍ଡିତମାନେ ତ ଜାତି ଯେବେ ଏତେ ଅଡ଼ୁଆ ଲଗାଇଥିଲେ, ତୁମ୍ଭେମାନେ ବିଶ୍ୱମ୍ଭରଙ୍କ ଶିଖା କାଟି ତାଙ୍କୁ ଯଥେଷ୍ଟ ଅପମାନ ଦେଇଥିଲ—ସେମାନେ ଆମନ୍ତ୍ରଣ-ପତ୍ର ରଖା କଲେ କିପରି ?

ଗିରେ ।—(କ୍ଷୀଣସ୍ୱରରେ) ତାଙ୍କ କଥା ଛାଡ଼ିଦିଅ । ଏବେ ଗୋହତ୍ୟା ହେଲେ ବ୍ରହ୍ମ-ହତ୍ୟା ! ଦୋଷଭୟରେ ସାବଧ ହୋଇ ସର୍ବ କରୁଥିଲେ—ସ୍ଥିର କଲେ ଯେ ହାକିମ ହୁକୁମ କଥା, କେତେବେଳେ କଅଣ ଅଛି—ଯିବା, ମାଫ କରୁ କରିବା ନାହିଁ । ସତେ ଯେମନ୍ତ ତାଙ୍କୁ କେହି କିଛି କାର୍ଯ୍ୟ କରିବାକୁ ଡାକୁଛି ।

ବୈଷ୍ଣ ।—( ତଦ୍‌ବହୁ ) ନା, ଛାଡ଼ିବାଟା ଭଲ । ଏ ପକ୍ଷରୁ ଉଦାର ଭାବର ବୃଦ୍ଧି ହେବା ଉଚିତ ନୁହେଁ ବରଂ ସେମାନେ ଉପସ୍ଥିତ ହୋଇ ତାଙ୍କ କର୍ତ୍ତବ୍ୟ କାର୍ଯ୍ୟ—ଆଶୀର୍ବାଦରେ—ତୁଷ୍ଟ କଲେ ଆପେ ତଳା ପଡ଼ିବେ ।— ( ପ୍ରକାଶ୍ୟେ ) ଆଚ୍ଛା, ଅତର ପାନ କିଏ ଦେବ ଠିକ୍ କରିଛ ?

ଗିରେ ।— ଆଦକନ୍ ଅତର ଦେବ । ମୁଁ ପାନ ଦେବ ।

ବୈଷ୍ଣ ।— ( ଜେବରୁ ଘଡ଼ି ବାହାର କରି ଦେଖି ) ବର୍ତ୍ତମାନ ସମୟେ ବସ—ସମୟ ହେଲାଣି । ( ଗୋଟିଏ ଚୌକିରେ ବସିବା । )

ଗିରେ ଓ ନୀଳ ।— ( ଆପଣା ଚୌକିରେ ଉପବେଶନ କରିବା । )

ନେପଥ୍ୟେ ।— ( ତୋପଧ୍ୱନି ଓ ପୁଲିସ-ସଲାମୀ ଶବ୍ଦ । )

[ ସାହେବ ବେଶରେ ସାଧବର ପ୍ରବେଶ ।

ସଭାସ୍ଥ ସମସ୍ତେ ।— ( ଉଠି ଦଣ୍ଡାୟମାନ ହୋଇ ଯଥାବିଧି ଅଭିବାଦନ କରଣ । )

ସାଧୁ ।— ( ମୁଣ୍ଡରୁ ଟୋପି ନେଇ ହାତରେ ଧରି ଟୋପି ହଲାଇ ଓ ମସ୍ତକ ନୁଆଇଁ ଆସି ସୁଶୋଭିତ ଗାଦିରେ ଉପବିଷ୍ଟ । )

ସଭାସ୍ଥ ସମସ୍ତେ ।— ( ପୁନରୁପବିଷ୍ଟ । )

ବ୍ରହ୍ମା ।— ( ଦଣ୍ଡାୟମାନ ହୋଇ ଯୁଗ ହାତ ଉଠାଇ ) ଓଁ ଯଃ ପ୍ରାଣତୋ ନିମିଷତୋ ମହିତ୍ୱୈକ ଇନ୍ଦ୍ରାଜା ଜଗତୋ ବଭୂବ । ଯ ଈଶେ ଅସ୍ୟ ଦ୍ୱିପଦଶ୍ଚତୁଷ୍ପଦଃ କସ୍ମୈ ଦେବାୟ ହବିଷା ବିଧେମ । ଓଁ ଯସ୍ୟେମେ ହିମବନ୍ତୋ ମହିତ୍ୱା ଯସ୍ୟ ସମୁଦ୍ରଂ ରସୟା ସହାହୁଃ । ଯସ୍ୟେମାଃ ପ୍ରଦିଶୋ ଯସ୍ୟ ବାହୂ କସ୍ମୈ ଦେବାୟ ହବିଷା ବିଧେମ । ଓଁ ଯେନ ଦ୍ୟୌରୁଗ୍ରା ପୃଥିବୀ ଚ ଦୃଢ଼ା ଯେନ ସ୍ୱଃ ସ୍ତଭିତଂ ଯେନ ନାକଃ । ଯୋ ଅନ୍ତରିକ୍ଷେ ରଜସୋ ବିମାନଃ କସ୍ମୈ ଦେବାୟ ହବିଷା ବିଧେମ ॥ ଓଁ ଯଂ କ୍ରନ୍ଦସୀ ଅବସା ତସ୍ତଭାନେ ଅଭ୍ୟୈକ୍ଷେତାଂ ମନସା ରେଜମାନେ । ଯତ୍ରାଧି ସୂର ଉଦିତୋ ବିଭାତି କସ୍ମୈ ଦେବାୟ ହବିଷା ବିଧେମ ॥ ଓଁ ଆପୋହ ଯଦ୍ବୃହତୀର୍ବିଶ୍ୱମାୟନ୍ ଗର୍ଭଂ ଦଧାନା ଜନୟନ୍ତୀରଗ୍ନିମ୍ । ତତୋ ଦେବାନାଂ ସମବର୍ତ୍ତତାସୁରେକଃ କସ୍ମୈ ଦେବାୟ ହବିଷା ବିଧେମ । ଓଁ ଯଶ୍ଚିଦାପୋ ମହିନା ପର୍ଯ୍ୟପଶ୍ୟ-ଦ୍ଦକ୍ଷଂ ଦଧାନା ଜନୟନ୍ତୀର୍ଯ୍ୟଜ୍ଞମ୍ । ଯୋ ଦେବେଷ୍ୱଧି ଦେବ ଏକ ଆସୀତ୍ କସ୍ମୈ ଦେବାୟ ହବିଷା ବିଧେମ ॥ ଓଁ ସ୍ୱସ୍ତି ନ ଇନ୍ଦ୍ରୋ ବୃଦ୍ଧଶ୍ରବାଃ ସ୍ୱସ୍ତି ନଃ ପୂଷା ବିଶ୍ୱବେଦାଃ । ସ୍ୱସ୍ତି ନସ୍ତାର୍କ୍ଷ୍ୟୋ ଅରିଷ୍ଟନେମିଃ ସ୍ୱସ୍ତି ନୋ ବୃହ-ସ୍ପତିର୍ଦଧାତୁ ॥ ଓଁ ଶଂ ନୋ ମିତ୍ରଃ ଶଂ ବରୁଣଃ ଶଂ ନୋ ଭବତ୍ୱର୍ଯ୍ୟମା । ଶଂ ନ ଇନ୍ଦ୍ରୋ ବୃହସ୍ପତିଃ ଶଂ ନୋ ବିଷ୍ଣୁରୁରୁକ୍ରମଃ ॥ ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

ଅଘ ।— ( ଆଗକୁ ଯାଇ ମେଜ ଉପରୁ 'ଅଭିନନ୍ଦନପତ୍ର ଖଣ୍ଡିଏ ଉଠାଇନେଇ ଏକ ପାର୍ଶ୍ୱରେ ଠିଆ ହୋଇ ପାଠ କରଣ )—

ଦେବ !
ଉତ୍କଳର ଶୁଭଦିନ ଆଜ—ଶୁଭକ୍ଷଣେ
ପୂର୍ବଦିଗେ ନବସୂର୍ଯ୍ୟ ଗଗନେ ଉଦିତ
କରିବାକୁ ଆଲୋକିତ ଦଶଦିଶ ହେଲେ ।
ପଳାଉଛି ବେଗେ ଯେତେ ଥିଲା ଅନ୍ଧକାର
ଘୋଟି ଯେଉଁଠାରେ—ଯେମନ୍ତେ ଦେଖି କଟୁଆଳ
ଲୁଚିଯାଏ ଚୋର, ଆଜ ସେହିରୂପେ ସବେ
ସୁଦୂର ବିଳାତ ଯାଇ ସୁଶିକ୍ଷା ଲଭିଣ,
ନାଶ କରି ଶତସୂର୍ଯ୍ୟସମ-ବିଦ୍ୟା-ଦୀପ୍ତି

ଅସିଛ ଆପଣେ ପୁଣି ସ୍ୱଦେଶେ ସ୍ୱଗଣେ
ନାଶିବାକୁ ଅନ୍ଧକାର ଅବିଦ୍ୟାସଞ୍ଜାତ;—
ହେଁ ଆଲୋକ-କଣା ପାଇ ହୃଦୟ-ପଙ୍କଜ
ପ୍ରତି ଗ୍ରାମ ନଗରରେ ଫୁଟିବ ଉଲ୍ଲାସେ !
ଭବ ବିଦ୍ୟା-ବଳ ଦେଖି ଅତି ତୋଷଭରେ
ଗଲ ପାଶେ ବିଳାତସ୍ଥ ଷ୍ଟେଟ ସେକ୍ରେଟେରୀ
ବୋଧ ଦେଇ ସେନଗଲେ ସମ୍ରାଟ-ଛମୁକୁ—
ଯାହାଙ୍କ ସାମ୍ରାଜ୍ୟେ ସୂର୍ଯ୍ୟ ଖଟନ୍ତି ସର୍ବଦା,
ବିଦ୍ୟାର ଆଲୋକେ କରୁ ସ୍ତମ୍ଭିତା ପୃଥିବୀ—
ଭବ ବିଦ୍ୟାକୀର୍ତ୍ତିରାଜି ଶୋଭିଲେ ମୁଖରେ !
ସ୍ୱହସ୍ତେ ସମ୍ରାଟ ସେନ ଦଇ ବସାଇଲେ
ପାର୍ଶ୍ୱରେ ସାଦରେ, ସ୍ୱୟଂ ସମ୍ରାଜ୍ଞୀଙ୍କି ଗଲ
କରାଇଲେ ଭେଟ,—ଏଡ଼େ ଅପୂର୍ବ ସମ୍ମାନ
ଦେଖା ନାହିଁ ନାହିଁ ଯାହା ବିଦ୍ୟାଗୁଣେ ଆଜ
ଫଳିଲା ଉତ୍କଳ-ସ୍ୱର୍ଗେ—ଓଡ଼ିଆ-କପାଳେ !
ଶ୍ରୀରଣାର ଓଡ୍ରଦେଶ କଳହବିବାଦେ;
ହେଉଛନ୍ତି ସାଙ୍ଗି ଲୋକେ ଅଶିକ୍ଷା-ପଙ୍କରେ,
ଦେଖି କର୍ଣ୍ଣ ଭୟଙ୍କର ଦେବୀ ସରସ୍ୱତୀ
ପଳାଇ ରହିଲେ ନାହିଁ—ବାଳ,ଯୁବା,ଜାୟା,
କାହାର ସଙ୍ଗରେ କେବେ ଦେଖା ନାହିଁ ଭଲେ—
ଅପାଠୁଆ ସର୍ବେ—ଦେଶ ମୂରୁଖ-ମଣ୍ଡଳ ।
ଉଦୟ ଏ ଦେଶେ ଶୁଭେ ! ଆପଣେ କରିବେ
ଉପାୟ ଏଥିର ଯତ୍ନେ ସମସ୍ତଙ୍କ ସଙ୍ଗେ
ବିଜେ ହୋଇ ସରସ୍ୱତୀ ଲକ୍ଷ୍ମୀଙ୍କି ଆହ୍ୱାନ
ଉଜ୍ଜ୍ୱଳ କରିବେ ଘର ଦୁଆର ବାହାର,
ହେବ ଦେଶ ଧନୀ ବିଦ୍ୟା-ବାଣିଜ୍ୟ ସମ୍ଭାରେ ।
ଦଅନ୍ତୁ ଆୟୁଷ ଦୀର୍ଘ ଧାତା ବିଶ୍ୱପାତା
ଘୋଷି ଦେଶ ଅର୍ଦ୍ଧେ ଯଶ ତବ ଉତ୍କଳରେ !
ଉଜ୍ଜ୍ୱଳ ଲଳନା-ମୁଖ ଜନ୍ମଭୂମି ଦେଶ—
କୋଟି ନକ୍ଷତ୍ରରେ ଆଜ ଶୋଭେ ଚନ୍ଦ୍ର ଏକ ।

( ଅଭିନନ୍ଦନପତ୍ର ମୋଡ଼ି ରୌପ୍ୟାଧାରରେ ରଖି ସାଧବଙ୍କହସ୍ତେ ପ୍ରଦାନ କରଣ । )

ସାଧୁ ।—( ଆସନରୁ ଉଠି ଅଭିନନ୍ଦନପତ୍ର ସହ ରୌପ୍ୟାଧାର ଗ୍ରହଣପୂର୍ବକ ମେଜଉପରେ ରଖି ବିନୀତଭାବରେ )

ପଣ୍ଡିତ ମଣ୍ଡଳ, ସ୍ୱାମିନ୍, ପ୍ରିୟ ଭ୍ରାତୃମାନେ,
କ୍ଷମିବେ ଏ ଦାସେ—ଏତେ ସମ୍ମାନଗ୍ରହଣ
ନୁହେ ଯୋଗ୍ୟ, ଅନୁଗ୍ରହ-ପ୍ରଦର୍ଶନ ସବୁ ।
ସମ୍ମାନ ଏ ଦାସେ ଏବେ ଆପଣାଙ୍କୁ ସର୍ବେ
କରୁଛ ସମ୍ମାନ, ମୁହିଁ ଅଭାଜନ ଅତି ।
କି ବିଦ୍ୟା ଅଛଇ ମୋର ?—ଥିଲି ମୁଁ ଯେ ଦେଶେ
ବିଦ୍ୟାର ଆକର ତାହା, ତହିଁ ଫଳ ଫଳ
ଏମନ୍ତ ବିଜ୍ଞାନ—ଯାର କୋହିନୂର ପରି
ଜଗତେ ଦୁର୍ଲଭ ଯାର ଜ୍ୱଳନ୍ତ ତେଜରେ
ଉଦ୍ଭାସିତ ଦେଶ,—କେତେ ସ୍ଥାନରେ ମିଳନ୍ତି
ଜଣାଏ ଯଦ୍ୟପି—କୋଟି ବିଦ୍ୟାଳୟ ତହିଁ ।
କି ରେଲ, ମୋଟର, କିବା ଆକାଶ-ବିମାନ,
କିଅବା ଅର୍ଣ୍ଣବପୋତ ବିଚିତ୍ର-ଗଠନ
ଅଛଇ ସକଳ ତହିଁ, ଶିଳ୍ପକଳା କତ
କରଇ ସକଳ କାର୍ଯ୍ୟ ବଢ଼ାଇ ସେବକେ,
ଦେଖନ୍ତି ଯେତୁ ଯଥା ସଭ୍ୟତା-ଶିଖରେ.
ଯା-କରେ ଶୋଭଇ ସୁଖେ ଭାରତ-ସାମ୍ରାଜ୍ୟ
ପୃଥିବୀ ମଧ୍ୟରେ ଯାର ରାଜ୍ୟ-ଶିରୋମଣି ।
ସମ୍ରାଟ ପଞ୍ଚମ ଜର୍ଜ ଅତୁଳ-ପ୍ରତାପ,
ବିଦ୍ୟା-ବିନୟରେ ସମ ନାହିଁ ଜଗତରେ,
କରି ଦର୍ଶନଦରବାର ଘୋଷିଲେ ସୁଖରେ
ପ୍ରଜା-ହିତ ପାଇଁ ପ୍ରଜା-ରଞ୍ଜନ ପ୍ରେମିକ
ହୋଇବ ବିସ୍ତାର ସାର୍ବଜନୀନ ସୁଶିକ୍ଷା
ଯାଇ ଯାହା ଲୋକେ ଘର ଆପଣା କରିବେ
ଉତ୍କଳ ପଣ୍ଡିତସ୍ଥଳେ ବେଦଧ୍ୱନିରେ ।—
କି ମଧୁର-ବାଣୀ ଆହା ! ଈଶ୍ୱର-କରତ
ପରସ୍ପେ ଲିଖିଛୁ ମନେ, ପଡ଼ୁଅଛୁ କତ

ନୂଆ ନୂଆ ଭାବ ଯେନ ମନେ କେତେମତେ !
ନିଜକାନେ ଶୁଣିଛନ୍ତି ବଚନ ଶାମୁଙ୍କୁ
ଧନ୍ୟ ଧନ୍ୟ ସେନ୍ତୁ, ମୁହିଁ ହଜାଲେ ସେ କଥା
ଲକ୍ଷ ଦେଇଥିଲି ପଢ଼ି ସମ୍ବାଦପତ୍ରରେ
ଆନନ୍ଦମନରେ ମାଗି ଈଶ୍ୱରଙ୍କ କୃପା
ଭାରତମାତଙ୍କ ପାଇଁ ଶତ ଆଶୀର୍ବାଦ ।
ଫେରିଲେ ସେ ଧନ ହଜେ ଲଣ୍ଡନ-ମାର୍ଗରେ—
ଜନ ସମାବେଶ ଯେତେ ସାଗର-ତରଙ୍ଗ
ଗର୍ଜିଲା ଗମ୍ଭୀର ରବେ ବନ୍ଦାହଙ୍କୁ ବନ୍ଦ,
ପତାକା ଲୁପ୍ତମଦାମ ଜଳଜଣା ଯହ
ଉର୍ଦ୍ଧ୍ୱେ ଉଠି ଯଶୋରାଶି ଘୋଷିଲା ଦୂରକୁ—
ଥିଲି ମୁଁ ଗହଣେ; ତହିଁ ଆର ଦିନ ମୋତେ
ମିଳିଲା ଶାମୁଭେଟ, ସମ୍ବାଦ ପତ୍ରରୁ
ଜାଣିଛ ସକଳେ । ଶାମୁ ଆଦେଶ ଅଛଇ—
ବାରମ୍ବାର କହି ମୋତେ କହଛନ୍ତି ଦୃଢ଼େ—
ଅଜ୍ଞାନ-ତାମସ ଯେପରି ନ ରହେ କଦାଚ
ଦେଶରେ ଦେଖିବ ସଦା, ଗ୍ରାମ ଗ୍ରାମ କରି
ବସାଇବ ପାଠଶାଳା, ଧନଠାରୁ ଦୁଃଖୀ
ବ୍ରାହ୍ମଣୁଁ ଚଣ୍ଡାଳ ପାଠ ପଢ଼ିବେ ସକଳେ—
ସରସ୍ୱତୀବରେ ହେବ ଲକ୍ଷ୍ମୀର ଉଦୟ;
ବାଣିଜ୍ୟ ବସିବେ ଲକ୍ଷ୍ମୀ ପାଦେ ସରସ୍ୱତୀ
ମନୁଁ ଘରୁଁ ଦୂର ହେବ ଯେତେ ଆବର୍ଜନା;
ଆଳସ୍ୟ-ଶମ୍ଭୁକ ଘୋର ତେଜିବେ ସକଳେ
କର୍ତ୍ତବ୍ୟ-କର୍ମରେ ହେବେ ଜାଗ୍ରତ ବନ୍ଧନ;
ସ୍ତ୍ରୀ-ଶିକ୍ଷାରେ ହେବ ତବ ଜାତିର ଉନ୍ନତି
ହରକ୍ଷଣ'ବୀର ଧୀର ପୁତ୍ର ହେବେ ଦେଶେ,—
ଅଛଇ ସେ ଅଙ୍ଗ ପଡ଼ି, ବନ୍ଧୁ ଗ୍ଲାନ ଚନ୍ଦୁଁ
କୁଏ ଉପଜାତ—ଦେଶ ବ୍ୟାଧିଗ୍ରସ୍ତ ଅତି;
ବସି ଶିଳ୍ପ-କଳା-କାରଖାନା ଠାବେ ଠାବେ
ଘୋଷିବ ଅବଦ୍ୟା ଅସ୍ତ୍ର ବିଦ୍ୟାର ପ୍ରଭାବେ ।

ଚଳିଣ ଏବଳା ବନ୍ଧୁଁ ପ୍ରଭୃ ନସ୍ତରେ
ଫଳିଷ୍ଠି ଜାତିର ବଡ଼ ଜାଣିବ ସକଳେ
ଟାଣିବ ସକଳେ ଶ୍ରେୟ ଉନ୍ନତି-ମାର୍ଗରେ।
ଶିଷ୍ୟର ପ୍ରଭାବେ ହେଲେ ଧର୍ମର ଉନ୍ନତି
ହୋଇବ ଦେଶରେ କ୍ରମେ ଦେଖିବ ସକଳେ—
ଯଥିରେ ଯଥାଇ ଜ୍ଞାନ ଈଶ୍ୱରେ ଈଶ୍ୱର,
ନିଷ୍ପାପ ନିଷ୍ପାପର ଧାମ, ଶୁଭ୍ରଶୁଭ୍ର ନୀତି।
ମାଗୁଣି ମୋହର ସର୍ବେ ଧର ଆଶାବାଣୀ
ଦେଇ ଯାଉଛନ୍ତି ଯାହା ସମ୍ରାଟ ସାଦରେ
ଅପାର ସହାନୁଭୂତି ଦେଖାଇ ଲୋକଙ୍କୁ।
ଶତ ଧନ୍ୟବାଦ ମୋର ସଦସ୍ୟଙ୍କଠାରେ
ଏକପ୍ରାଣେ ମନାସିଛ ମଙ୍ଗଳ ମୋହର;—
ଏକପ୍ରାଣେ ଲାଗି ଯାଅ କର୍ତ୍ତବ୍ୟ କର୍ମରେ,
ଏକପ୍ରାଣେ ଲୋଡ଼ ପଥ ଉନ୍ନତି ମାର୍ଗରେ,
ଏକପ୍ରାଣେ ଧର ବ୍ରତ ପର ଉପକାରେ
ଈଶ୍ୱର ସନ୍ତାନ ମଣି ଏକଙ୍କୁ ଅପରେ,
ଏକପ୍ରାଣେ ଲାଗ ସର୍ବେ ବିଦ୍ୟାର ବିସ୍ତାରେ,—
ଲାଗ ଏକମନେ ହୋମଶିଳ୍ପବାଣିଜ୍ୟରେ
ସାଧୁସଙ୍ଗ ସାଧୁଚର୍ଚ୍ଚା ବେଦ-ବିଧାନରେ,
ତ୍ରିବିଧ ଯଜ୍ଞହିଁ ସଦା କର୍ତ୍ତବ୍ୟ ଲୋକରେ।
ମୋର ମଙ୍ଗଳରେ ହେଉ ସମସ୍ତଙ୍କ ହିତ—
ପ୍ରାର୍ଥନା ପରମପିତା ଈଶ୍ୱରଙ୍କ ଠାରେ। [ଆସନରେ ଉପବିଷ୍ଟ।

ଆଦ।— (ଉଠିଯାଇ ନେପଥ୍ୟରୁ ଅତରଦାନ ଆଣି ସମସ୍ତଙ୍କୁ ଅତର ଦେବା।)

ଘରେ।—( ଉଠିଯାଇ ନେପଥ୍ୟରୁ ପାନଥାଳି ଆଣି ସମସ୍ତଙ୍କୁ ପାନ ବାଣ୍ଟିବା।)

ନୀଳ ।—( ହାତଯୋଡ଼ି ) ଅନୁମତି ହେଲେ ଏଠାରେ ବାଳଭୋଜ ହେବ।

ସାଧୁ ।—ତଥାସ୍ତୁ। ( ଆସନରୁ ଉଠି ଧୀରେ ପ୍ରସ୍ଥାନ।)

ଧର୍ମସଦ୍‌ବର୍ଗ ।—( ଆସନରୁ ଉଠି ସାଧୁବର ପଛରେ ପ୍ରସ୍ଥିତ!)

ଅଷ ।—ତପସ୍ୱି!

[ ତପସ୍ୱୀକୁମାରର ପ୍ରବେଶ।

ଏ ସବୁ ଉଠାଇ ଦିଅ—ଏହିଠାରେ ପିଲାଏ ନିଷ୍ଠାନ୍ନ ଖାଇବେ।

ଚପ,ବୃନ୍ଦ ।—ହଜୁର ଯୋ ହୁକୁମ୍ । ( ଚୌକି ଓ ମେଜ ଉଠାଇ ନେବା । )

ଅଘ ।— ସ୍ତ୍ରୀର ପରୀକ୍ଷାର ବେଳ, ଆସ ସମସ୍ତେ ଘରକୁ ଯାଇ ଆଣିବ ।

[ ଅଘୋର ଓ ଚପୃଷ୍ଟାତ୍ର ଗରେନ୍ଦ୍ର, ଗାଲକଣ୍ଡ, ଅବ-ନନ୍ଦ ଓ ଚପରାସି ବୃନ୍ଦର ପ୍ରସ୍ଥାନ ଓ

## ଷଷ୍ଠପରିବର୍ତ୍ତନ ।

—○:※§※§※:○—

### ଦ୍ୱିତୀୟ ଦୃଶ୍ୟ । ଉଦ୍ୟାନ-ବାଟିକା ।

[ ପ୍ରସ୍ତର ପାଟୋପର ଲୀଳାବତୀ ଆସୀନା । ପାର୍ଶ୍ୱେ ଅନ୍ୟ ପାଟୋପର ପୁଷ୍ପ ଗୁଚ୍ଛରୁ ଫୁଲ ନେଇ ମାଳତୀ ଓ ମାଧବୀ ମାଳା ଗୁନ୍ଥିବାରେ ନିଯୁକ୍ତା । ]

ମାଳ ।— ( ଫୁଲ ଗୁନ୍ଥୁ ୨ ) ସଖି ! କେଉଁଦିନର ଫୁଲ ଗୁନ୍ଥିବାକୁ ନାହିଁ ଜାଣି— ଆଜି କେମନ୍ତ ଶରଧା ବଳଲା ଯେ ମାଳା ଗୁନ୍ଥିବାକୁ ନାହିଁ ମନକୁ ମନାଇ ନେଇଛ !

ମାଧ ।— (ଚହଟିକି) ସତେ, ସଖି ! ମୋତେ ସେ କଥା ଆଚମ୍ବିତ ଲାଗିଛି !— ଯେବେ ସଖୀ ଆମର ପଢ଼ାଗୁଣା କରନ୍ତି—ସବେ ଜଳ ବହି ପଢ଼ି, ପଢ଼ି ନିତ୍ୟ ନୂଆ ପାଠ ପଢ଼ିଥିବେ ।

ଲୀଳା ।— ( ହସି ପକାଇ ) ସତେ ଏକା ନୂଆ ପାଠ ! ସଖି, ମନକଥା ତୁମ ଆଗରେ ନ କହିବି କହିବି କା ଆଗରେ ! ବୋଉ ମଲାଦିନୁ ( କହି ୨ ହୋଇ ଉଠି ଲୁହ ଗଡ଼ାଇବା )—

ମାଳ ।— ( ମାଳା ରଖି ବ୍ୟସ୍ତ ହୋଇ ଉଠିଯାଇ ବସ୍ତ୍ରାଞ୍ଚଳରେ ଲୋଚନ ମୋଚନ କରୁ ୨ ) ଏ କଣ, ସଖି, ଭଲ କଥା କହୁଁ କହୁଁ କାନ୍ଦୁଛ !

ମାଧ ।— ଛି ସଖି ! ଆଉ ଏମିତି କାନ୍ଦୁଛ କା ପାଇଁ —ବୋଉ କି କାନ୍ଦିଲେ ଫେରି ଆସିବେ ! ଯେ ଯାଇଛି ସେ ଆଉ କି ଆସେ ! ସେ ସ୍ୱର୍ଗର ଦେବୀ —ଆଉ ତାଙ୍କର ସଂସାରରେ ରହି ଯନ୍ତ୍ରଣା ଦୁଃଖ ଦେଖିବେ ! ..ଦେଖିବ, ମୋର ମାଳଟି କେମନ୍ତ ଢଙ୍ଗର ହେଉଛି । ( ମାଳଟି ଲୀଳାବତୀ ଆଗରେ ଧରିବା । )

ଲୀଳା ।— ( ସମ୍ଭାଳି ହୋଇ ) ଗୁନ୍ଥି ଯାଅ ସଖି, ମାଳାଟି ଶେଷ କର । ଉତ୍ତମ ଢଙ୍ଗରେ ଗୁନ୍ଥା ହେଉଛି ।

ମାଳ ।— ( ଆପଣା ଆସନରେ ବସି ମାଳା ଗୁନ୍ଥି ) କଣ କହୁଥିଲ ସଖି ?

ଲୀଳା ।— ହଁ ମୁଁ କହୁଥିଲି ସେହି ଦିନୁଁ ମୋରେ କିଛି ଭଲ ଲାଗୁ ନ ଥିଲା ! ଏ ଉପବନକୁ ଥରେ ଥରେ ମନକୁ ଭୁଲାଇବା ପାଇଁ ଆସୁଥିଲି ଯେ ଗୋଟିଏ ହେଲେ ଫୁଲ ଫୁଟୁ ନ ଥିଲା —ମନେ କରୁଥିଲି ବୋଧ ସଙ୍ଗେ ସଙ୍ଗେ କପାଳ ବି ଗଲା, ସବୁର ଶିକ୍ଷା ଗଲା, ଜୀବନରୁ ଲୁପ୍ତ ହେଲା !

ମାଳ ।— ( ମାଳା ଗୁନ୍ଥୁ ) ଛି ସଖି, ଆମକୁ ପର କେବେ ଦୁଃଖାଇର ଅବସ୍ଥାନ କରିବ ନାହିଁ !

ଲୀଳା ।—ତା ନୁହେଁ ସଖି ! ମୁଁ କହୁଥିଲି ବୋଧ ଗଲାରୁ ତାର ବି ଶିକ୍ଷା ଛୁଟି ଯାଇଥିଲା ।

ମାଧ ।— ସଖି, ଦୁଃଖପର୍ବ ଏବେ ଆସେ ନାହିଁ ?

ଲୀଳା ।—ଯଦିଓ ଏବେ ମୁଁ ମନେ କଲି ମୋରେ କି ଗୁରୁ ଅଛି ଦୁଃଖ ଯୋଗ ଅଛି ! ତହିଁ ଉତ୍ତାରୁ ସ୍ୱାମୀଙ୍କ ମେ ରେ ଦୁଃଖାଇ ସନ୍ଧାଇ ଗୁମାସ୍ତା ଓ ତାଙ୍କ ମାଉସୀଙ୍କୁ ପଶୁର ଭୂମମାନଙ୍କୁ ସଙ୍ଗୀ କରିଦେଇ ବେଳେ ବେଳେ ଏଠି ବସିବା ସହାରେ ଆଖି ଦେଖାଇ ଦେଇ ଗଲେ ! ସେହି ଦିନରୁ ମୁଁ ଆସି ଦେଖୁଛି ଯେ ଗୋଟିଏ ଗୋଟିଏ ପଥ କାଢ଼ି ଲ ଆସିଲା—ଗୋଟିଏ ଗୋଟିଏ କଢ଼ ବାହାରି ପଡ଼ିଲା —ଗୋଟିଏ ଗୋଟିଏ ଫୁଲ ଫୁଟି ଆସୁ ଆସୁ ଆଜ ବଗିଚାଟି ଫୁଲରେ ଲଦି ହୋଇ ଯାଇଛି !

ମାଳ ।— ମାଳା ଗୁନ୍ଥେଇବାକୁ କାହିଁକି ମନ ହେଲା ?

ଲୀଳା— ମନେ ହେଲା ମୋରି ସବୁ ସଉଚ ମାଝ ଫସଲରେ ଯେବେ ଦିନ ଥିବ କର୍ତ୍ତବ୍ୟ କ କରି ବାଟ ନାହିଁ । ଯେ ନିଃସ୍ୱାର୍ଥଭାବରେ ମୋ ମନକୁ ମନାଇ କର୍ତ୍ତବ୍ୟପଥରେ ନେବା ପାଇଁ ଯତ୍ନ କରୁଛନ୍ତି, ଯାଙ୍କ କଥା ମାନି ଚାଲିବାକୁ ବୋଧ ମୋରେ କହି ଯାଇଛି, ଯାଙ୍କ ଯୋଗେ—ମୋ ମନେ ହେଉଛି ଏବେ ତାଙ୍କର ଯୋଗେ—ଆଜ ବଗିଚା ନନ୍ଦନକାନନ ପରି ଫୁଲରେ କେଶ ଭରି ଯାଉଛି —ତାଙ୍କୁ ଏହି ଫୁଲର ମାଳ କରି ପିନ୍ଧାଇ ଦେବି । ସେ ମୋର ଗୁରୁ —ମୋର ପୂଜ୍ୟ ଦେବ ।

ମାଧ ।— ଗୋଷ୍ଠିକରେଇ ହୋଇଥାନ୍ତା — ଆଉ ଗୋଟିଏ —ଯୋଡ଼ାଏ ମାଳ କାହିଁକି ?

ଲୀଳା — ( ହସି ପକାଇ ) ମୋର ପର ଯୋଡ଼ିଏ !

ମାଳ ।— ତୁଇ ଗୁରୁ ?

ଲୀଳା ।— ତୁଇ ସଖି, ତୁଇ ସହଚରୀ ପ୍ରାଣାପ ଉପର ତୁଇ ଜୀବନସଙ୍ଗିନୀ ! ଜଣେ ଗୁନ୍ଥିଲେ ଆଉଜଣକର ଅସ୍ପୃଷ୍ଟ ହୋଇ ବସିବ ନାହିଁ ।

ମାଧ ।— ଏ କଥା ମୋ ମନକୁ ଆସୁ ନାହିଁ ।

ଲୀଳା — ତ ଆସିବ ନାହିଁ — ଝଲେକ ପରୀକ୍ଷିଦେଲେ ।

ମାଳ ।— ହଁ ସେଇଆ ସେଇଆ !

ଲୀଳା ।— ( କାନ ଡେରି ) ଏ କି ଗୀତ ଶୁଣୁଛ ?

ମାଧ ।— ( ଟିକିଏ କାନ ଡେରି ) ଚମ୍ପା ଗାଉଛି—

ମାଳ ।— ଏଇଆଡ଼େ ଆସୁଛି ।

ଲୀଳା ।— ଏତ ଯାହା କହ ସଖି, ବେଳେ ବେଳେ ବାସ୍ତୁଣୀ ସବୁ ଜଣା ଯାଏ ମାତ୍ର ଚମ୍ପାର ମନରେ ସବୁବେଳେ ଆନନ୍ଦ —ସବୁବେଳେ ସେ ତାହାର ପରମନକୁ ମୋହ କରେ ।

[ ବେହେଲା ହସ୍ତେ ଚମ୍ପାର ପ୍ରବେଶ ।

ଚମ୍ପା ।— ସନ୍ଧ୍ୟା ସଙ୍ଗେ ଶଚୀଦେବୀ ନନ୍ଦନକାନନରେ ବିଜେ କରନ୍ତି ।

ମାଧ ।— ସ୍ୱର୍ଗପରୀ ଯେତ୍ତା ଥିଲା !

ଚମ୍ପା ।— କାଳିଦାସଙ୍କ ପରି ପାଦପୂରଣ କଲ !

ମାଳ ।— ହେଲା ନାହିଁ ?

ଲୀଳା ।— ( ମାଧବୀକୁ ଅନାଇ ) ଠିକ୍ ହୋଇଛି ! ମୁଁ ଏହିକ୍ଷଣି ନନ୍ଦନକାନନ କହୁଥିଲି, ସଖି ଅମର ନନ୍ଦନକାନନ ସଙ୍ଗେ ମୋତେ ଶଚୀଦେବୀ କରିଦେଲେ । ସଖି, ଯଥାର୍ଥ କହୁଛ ଚମ୍ପାଦେବୀ ସ୍ୱର୍ଗର ପରୀ— ଆନନ୍ଦର ଲହରୀ, ସଙ୍ଗୀତ-ପିତୁଳା !—(ଚମ୍ପାକୁ ଅନାଇ)—ଗାଇଲୁ କି ଗୀତଟି ଗାଉଥିଲୁ ? ସେ ପୀଠରେ ବସ ।

ଚମ୍ପା ।— ଶୁଣିବ ? —ଶୁଣ । (ଅନ୍ୟ ପୀଠୋପରି ବସି ବେହେଲା ବଜାଇ ଗୀତ)

ରାଗ ଶଙ୍କରାଭରଣ । ତାଳ ଝୁଲା ଓ ପଦ୍ମଚଟ ।

କୋକିଳ ! ତୁ ମୋ ଜୀବନ-ସମ୍ବଳ ।
ତୁ ଥାଉଁ ସଂସାର ଦିଶେ ଉଜ୍ଜ୍ୱଳ ॥ ଘୋଷା ॥

ଫଳ ଫୁଲ ଦେଖେ ଧରା ବସନ୍ତେ । ତୋ ଲାଗି ସକଳ ଲାଗଇ ମୋତେ । ୧ ।
ଯେ ପ୍ରେମେ ରଚିଲେ ବିଶ୍ୱ ବିଧାତା । ସମ୍ପୂର୍ଣ୍ଣ ତୋଠାରେ ତାହାର ସତ୍ତା । ୨ ।
ତୁ କଳାମାଣିକ ବିଶ୍ୱ-ଭଣ୍ଡାରେ । ତୋ ଯୋଗୁ ଉଦ୍ୟାନ ଶୋଭା ବାହାରେ । ୩ ।
ପ୍ରିୟମ୍ବଦା ପ୍ରିୟ ବୁଝନ୍ତି କାହିଁ । ଏ ଶିକ୍ଷା ତୋଠାରୁ ଲୋକେ ପାଆନ୍ତି । ୪ ।
ଭାବେ ଗାଇ ଦେଖି ତୁ ବନ-ଲୀଳା । ଯାଇଲେ ସଖୀଠାରେ ନ କରି ହେଳା । ୫ ।

ଲୀଳା ।— ଭଲ ଗାଇଲୁ ସଖି ! ଏ କୋକିଳକଳକଣ୍ଠରୁ ସୁଧାମୟ ସଙ୍ଗୀତସ୍ରୋତ ବାହାରି ଧୋଇଧାଇ ପବିତ୍ର କରି ଦେଉ । ଶରୀରଧର୍ମୀ ଗୁଣରେ ଲୁଲିତ ହୋଇ କୁସୁମଶ୍ରେଣୀର ନୃତ୍ୟ ଚାହିଁକି ନୂଆ ସବୁକୁ କରି ମୋହ ଦେଉ ।

ଚମ୍ପା ।— ସଖି !

ଉଦ୍ୟାନବାଟିକା ନାଟିକା ରୂପରେ ଫୁଲମାନେ ଶୁଣ ହୋଇ ।
ଶୃଙ୍ଗାଟିକାଟିକା ଫୁଲର ମୃଣାଳ କୋମଳଗାତ୍ର ରୂପେ ଶୋହ ।
ଫୁଲର ଲବଙ୍ଗ ଫଳର ଖାଟିକା ସୋହହୋଇ ଯତନରେ ।
ନବଂବଧୂରୂପେ ନବ ଯାଟିକାରେ ମକରନ୍ଦ ଟାଣି ଧରେ ।
ମୁଖକମଳନୀ ଭ୍ରମରସେବକା ମୁକ୍ତିକା ଉଜ୍ଜ୍ୱଳ କର ।
ଉତ୍ପୁଲ୍ଲ ସୌରଭ ଯଶଃକୀର୍ତ୍ତିଯର ରୌଦନେ ଯାଏ ବିସ୍ତାର ।
ନାସା ଭଲଫୁଲ କର୍ଣ୍ଣ କର୍ଣ୍ଣିକାର ନୟନ ଅପରାଜିତା ।
ଗ୍ରୀବାଭଙ୍ଗୀରାଣୀ ଅଗସ୍ତି ବଣାଣି ସୁଷମା ଜଗତଜିତା ।
ସୁନାସି ସୁନାସି-ନାର ଶୋଭା କରୁ ଚମ୍ପାକବରଣେ ସାଜେ ।
ମାଧବୀ ମାଲତୀ ଚରଣରେ ଲୋଟି ଉପମା ପାଇବା ଲାଜେ ।
ମଲ୍ଲିକାମାଳିକା ଲୋଟିକା ଭଜନା ସ୍ୱଭାବ ମନ ଯୋଗାଏ ।
ଲୁନ ନାଗେଶ୍ୱର ଶୋଭାର ପେଟିକା ସେନ ବ ଇଙ୍ଗରେ ଶୋହେ ।
ନାଭି ନୂଆନାଗ କାହାର ରଖିଛୁ ନାଡ଼ିକା ଏକା ଏଠାର ।
ଜୀବନ-ନାବିକା କୃଷ୍ଣଶେଫାଳିକା ମାରୁଅଛୁ କେତେ ଠାର ।
କାମିନୀ-କଳିକା ମୋହ ଭଏ ମନ ବାସେ ବାସେ ଭଣେ ନାହିଁ ।
ଗନ୍ଧନଳାପର ବକ୍ଷ ଭ ବକୁଳ ସଖିଏ ପଡ଼ିଲେ ଧାଇଁ ।
ହିଦବ-ଦୁର୍ଲ୍ଲଭ ଫୁଲସାଙ୍ଗେ ଅନ ଫୁଲ ଉଡ଼ୁଅଛୁ ଛାଡ଼ି ।
ସୌଭାଗ୍ୟ-ଚନ୍ଦ୍ରିକା ଅତୁଳକୁଳିକା ମନ ଯାଉଅଛୁ ମାଡ଼ି ।
ହିନ୍ଦୋଳ-ଘାଟିକା ଜିଷ୍ଟିକା ବନ୍ଧକା ମନ୍ତୁ କେବେ ଯିବ ନାହିଁ ।
ସବୁ କଥା ସେନ ସ୍ୱର୍ଣ୍ଣଦେବୀ ରୂପେ ଖସି ମେଳେ ମୁହଁ ଯାଉ ।

ମାଧ ।— ଅଳକ ରସରେ ମାଉ ଚମ୍ପାର କାହାକୁ ଛାଡ଼ିଲା ନାହିଁ ।

ମାଳ ।— ସମସ୍ତଙ୍କୁ କେଉ ରୂପ ଠିଆ କରଦେଲା, ଅପେ ବ ଭାଭିତରେ ରହିଲା ।

ଲୀଳା ।— କେବେହ ରହିଗଲା—

ମାଧବୀ ମାଳତୀ ଯେବେ କହ ସଖି ଚମ୍ପା ଏକା କହିଁ ଟୀକା ।
ନାଟ୍ୟରସ ସିନା ମିଳେ ଯଥାର୍ଥରେ ଥିଲେ ନକ୍ଷୀନାଥ ଟୀକା ।
ଗ୍ରୀବର ଝିଟିକା ବହାଉ ଯେ ପାରେ ହିଦବ-ଦୁର୍ଲ୍ଲଭ ସେହ ।
ଅଳକ-ବିଟିକା ଛୁଆଉ ଯେ ପାରେ ତାଠାରେ ବ ଶ୍ରୀର ମୁହିଁ ।

ମାଧ ।— ବେଶ୍ କହୁଛ ସଖି !

ମାଳ ।— ଏଥରଁ ଚମ୍ପାର ହାର !

ରମ୍ଭା ।—( ହାତତାଳିର ମଧ୍ୟ ହସି ) ରମ୍ଭା ହାତୁଡାର ଗାନ୍ଧୀ ନୃତ୍ୟ—
ଯା ଯେତେ ଜୀବନ ସୁଖରେ ଯାପନ କରୁଛୁ ନନ୍ଦକାନନ ।
ଅତୁଳ ପ୍ରେମରେ ସ୍ନାବଣୀ ବଢ଼େ ଅଖଣ୍ଡ ଯାହାର ପ୍ରୀତି ॥
ଉପାଦାନେ ଯାର ବନ୍ଧିତା ଗଠିତ ବଉଦ୍ ଧଳା ଯା ଠାରେ ।
ମନ-ଉଲ୍ଲାସିତା ମଣି ଲଭିଛିତା ସବୁ ଦେ ତାଲୁ ସଂସାରେ ॥
( ବେହେଲା ବଜାଇ ଗୀତ )

ରାଗ ଲଳିତଖଟ୍ଟା—ଏକତାଳୀ ।

ଅରେ ତ୍ରିଦିବସତି ! ତୋହଠାରେ ଯାଉଅଛୁ ମନ ଲାଗି ॥
ଏ ଯେ ନନ୍ଦନ କାନନ ସ୍ୱର୍ଗଧାମ । ଶୋଭା ଦେଖି ମୋହୁଅଛୁ ମନ ।
ତୁ ଥିଲାକୁ ସିନା ତାହାର ମହିମା ନ ଥିଲେ ଘରେ କି ମନ ରହି ।
ଅରେ ଜୀବଧନ ! ତନ୍ତ୍ର ଥିଲେ ଉଚ୍ଛାଳିବ-ଫୁଲେ ମନ ॥
ତୋର ପ୍ରେମଛଟା ସୁଧାସାର । ବଳ ତାଲୁ ନାହିଁ ଏ ସଂସାର ।
କଳଙ୍କ କଲ୍ପନା ଗୁଣ ଗଣି । ଗୁଣ୍ଠାଉଁ ସବେ ଦବାଇଣି ।
ତୋର ହୃଦୟର ଛଟିକୁଁ ନିର୍ମଳ ସୋଣ୍ଡୁ ଯଶୋରାଶି ଜଗତ୍ଜନ ।
ଅରେ ଗୁଣଧନ । ତୋତେ ସୁଖ ଶାନ୍ତି ଦିଅନ୍ତୁ ଭଗବାନ ॥
[ ପଶ୍ଚାଦ୍ଦିଗରୁ ମାଧବର ପ୍ରବେଶ ।

ମାଧ ।—ଭଲ ବୋଲୁଛ ! ରମ୍ଭା କି ହେଲେ ସଙ୍ଗୀତ ଗୌରବରେ ଆଉ କଏ ଏ ଭଳି ଉଦ୍ୟାନକୁ ଉନ୍ମାଦିତ କରନ୍ତା !

ଲୀଳା, ମାଳ, ମାଧ, ରମ୍ଭା ।—( ଉଠି ଦଣ୍ଡାୟମାନା । )

ମାଧ ।—ବସ ବସ ସମସ୍ତେ—ମୁଁ ସଙ୍ଗୀତର ଶବ୍ଦ ପାଇ ସ୍ୱୟଂ ଉଟଣ୍ଡ ହୋଇ ଆସିଛି !

ଲୀଳା ।—ବସିବ ନା ?—( ଅଙ୍ଗୁଳି ନିର୍ଦ୍ଦେଶ କରି ) ସେହି ପୀଠରେ ବସ ।

ମାଧ ।—ଆସିଛି, ବସିବି ନାହିଁ ? ( ଅନ୍ୟ ପୀଠରେ ବସି ) ତୁମ୍ଭେମାନେ ବସ ।

ଲୀଳା ।—( ଉପବିଷ୍ଟା ହୋଇ ) ତୁମର ଯେତେ କାର୍ଯ୍ୟ—ତୁମ୍ଭେ ଯେ ଉଦ୍ୟାନରେ ବସି ଶାନ୍ତିଭୋଗ କରିବ ଏହା ମୋତେ ବିଶ୍ୱାସ ଯାଉ ନାହିଁ ।—ବସ, ସଖୀ ଏ !

ମାଧ, ମାଳ, ରମ୍ଭା ।—( ଉପବେଶନ ପୂର୍ବକ ) ଭଲ ଯୋଗରେ ପହଞ୍ଚିଲ ।

ଲୀଳା ।—ମୁଁ ଏ ବାଟିକାରେ ବସି ସଖୀମାନଙ୍କ ସଙ୍ଗେ କଥାବାର୍ତ୍ତା ହେଉଥିଲି—ରମ୍ଭା ଆସି ଆମ୍ଭମାନଙ୍କୁ ନେଇ ସ୍ୱର୍ଗପୁରରେ ବସାଇଦେଇ ଅପୂର୍ବ ସୁଖର ଆସ୍ୱାଦନ କରାଇଦେଲା ।

ମାଧ ।—ମୁଁ ସବୁ ଶୁଣିଛି । କ୍ଷମା କରିବେ !—ଆଜ ମୁଁ ଗୋଟାଏ ଗୁରୁତର ବିଷୟରେ ରିପୋର୍ଟ ଲେଖି ଲେଖି ମନଟା କ୍ଲାନ୍ତ ହୋଇଗଲା । ତେଣୁ ବାୟୁସେବନ କରିବାକୁ ଆସି ମାଳତୀ-କୁଞ୍ଜରେ ବସି ମନ୍ଦସମୀରଣବାହୀ ସୁନ୍ଦର ସୌରଭ ସେବନ କରୁଥିଲି ଏହି ସମୟରେ ତୁମ୍ଭେ ସଖୀମାନଙ୍କ ସଙ୍ଗରେ ଆସି ଫୁଲ ତୋଳିବାକୁ ବସିଲ—ମୁଁ ତ ରଙ୍ଗ ଦେଖୁଛି ।—କିଛି ଅନ୍ୟାୟ ହୋଇଛି କି ?

ଲୀଲା ।—କିଛି ଅନ୍ୟାୟ ହୋଇ ନାହିଁ—ସ୍ୱାମୀଙ୍କ ତୁମ୍ଭଙ୍କୁ ଯେତେବେଳେ ଇଚ୍ଛା ବନ୍ଧୁଭାବରେ ଆସିବାପାଇଁ ଅନୁମତି ଦେଇଛନ୍ତି । ସୁଶିକ୍ଷିତ ବିଦ୍ୱାନ୍ ପୁରୁଷମାନଙ୍କର ସଙ୍ଗ ବେଦରେ ପ୍ରଧାନ ଯଜ୍ଞରୂପେ ବର୍ଣ୍ଣିତ ଅଛି । ଯେ ଯେ ଯଜ୍ଞର ଯଜମାନ ତାହାର ମନ ଯେମନ୍ତ ନିର୍ମଳ ଅଗଣିତ ବିଦ୍ୱାନ୍ ମଧ୍ୟ ନିର୍ମଳ ହୃଦୟରେ ସଦାଳାପ କରି ପରସ୍ପର ଉନ୍ନତିର ମୂଳ ହେବେ । ଯେତେବେଳେ ଇଚ୍ଛା ସେତେବେଳେ ଆସି ବାୟୁସେବନ ଅଥବା ଆଳାପସମ୍ଭାଷଣ କରିବାସକାଶେ ତୁମ୍ଭଙ୍କୁ କିଏ ମନା କରିପାରେ ?—ଅଜ୍ଞାତ କୁଳଶୀଳ ନୁହ ଯେ ବାସ ମିଳିବ ନାହିଁ ।

ମାଧ ।—ଏ କଥା ଶୁଣି ମୋର ପ୍ରାଣ ଶୀତଳ ହେଲା । ତୁମ୍ଭର ଚତୁରତା ସେହି ଅମୃତବାଣୀ, ସେହି ଅପରିଚିତ ବିଶେଷ ସ୍ନେହ ମୁଁ ଯେତେବେଳେ ଭାବେ ସେତେବେଳେ ମୋହିତ ହୋଇଯାଏଁ ।—ତ ଚମ୍ପା, କଣ ଗାଉଛ !—ତୁମ୍ଭେତ ସେହି କଥା ଗାଉଥିଲ ।

ଚମ୍ପା ।—ମୁଁ ତ ସେହିଟା ଗାଉଥିଲି, ଆଉ ସେହି କଥା ସହିବେଲେ ମନେ ମନେ ଗାଉଛି ।

ମାଧ ।—ସଖୀ ଅନୁମତି ଦେଲେ ଆଉ ଗୋଟିଏ ଗାଇବ କି ?

ଲୀଲା ।—ମୋର ଅନୁମତିର ପ୍ରୟୋଜନ ନାହିଁ । ବେଳ ଜାଣି ଅନୁମତି ଦେଲା ଚମ୍ପା ସଖୀ ଏଠାକୁ ଆସି ଗୀତ ଗାଇ ଗାଉଥିଲେ ଆଉ ଗୋଟାଏ ଗାଇଲା । ତୁମ୍ଭେମଧ୍ୟ ଅନୁମତି ଦେଲା ଅଛିତ—ଆଉ ଗୀତଗାଇବାପାଇଁ ଅନୁମତି ଲୋଡ଼ା ନାହିଁକି ?

ମାଧ ।—ମୁଁ ହାରିଲି ।

ଚମ୍ପା ।—ଆମ ସଖୀଙ୍କି କେହି କଥାରେ ପାରିବେ ନାହିଁ ପରା । ( ବେହେଲା ବଜାଇ ଗୀତ )—

ରାଗିଣୀ ପିଲୁ । ତାଳ ଝପା ।
ଆସେ ନବଯୌବନରେ ଲାବଣ୍ୟ ଭରିତ ।
କେହି ଦେଖିଛ କେତୁ ତାର ମାଧବ । ବୋଲ ।

ସଙ୍ଗେ ସଙ୍ଗେ ଅଛୁ ତାର ନେତ୍ରୁ ନ ଚାହେଁ,
ଚଲାଉଛୁ ନିଜ ତାକୁ କେତେ ବିଧାନେ ।
ସେହୁ ଜୀବନସଙ୍ଗୀ　　　କାର୍ଯ୍ୟକୁଶଳ ମନ୍ତ୍ରୀ
ଯୋଗିଜନମାନସ　　　ମୋହେ ଯାହାର ଭଙ୍ଗୀ
ବିଶ୍ୱ-ରଙ୍ଗ-ମଞ୍ଚକୁ　　　ଅଛଇ ସେହୁ ରଙ୍ଗି
　　　ତାହୁଁ ଯାଉବ ନହୁଁ ଅଧିକ । ୧ ।
କୁସୁମକାନନରୁ ଯେସନେ ବାସ ବିସ୍ତାର
ଯଶ ଚନ୍ଦ୍ରଟଇ ତାର ବିଶ୍ୱସାର
ସେ ନବ ଦେବ ଗୁରୁ　　　ପୂଜା କରଇ ମରୁ,
ପ୍ରେମସଙ୍ଗୀତ ଟାଣେ　　　ଚିତ୍ତରେ ଜୀବନରୁ
ଲୀଳାଖେଳା ଯାହାର　　　ଅଟଇ ଅଳ୍ପ ସରୁ
　　　ବ୍ୟାପି ଅଛଇ ଦଶଦିଗ । ୨ ।
ସୁକୁମାରୀ ସଖୀ ଲୀଳାବତୀ-କଥାର
ନ ଥିଲା ତାହିଁ ନ ପଟାନ୍ତର ସଂସାର
ଉପବନେ ନିବାସ　　　ଚନ୍ଦ୍ରହିଁ ଯାଏ ବାସ
ସଖୀସଖା ମେଳରେ　　　ଦୁଃଖ କରଇ ନାଶ
ସତେ କି ବିଶ୍ୱଯାତ୍ରା　　　ଦେବେ ତାହାକୁ ବାସ
　　　ଚଳବ ଭାବ ବୁଲ ବନ୍ଧକ । ୩ ।

ମାଧ ।— ଅତି ଉତ୍ତମ ଗୀତ ହେଲା ।
ଲୀଳା ।— ପାନ ଖାଇବ ନାହିଁ ?
ମାଧ ।— ପାନ ତ ଏଠାରେ ନାହିଁ ।
ଲୀଳା — ଆଣି ଦେଉଛି । ସଖି ମାଧବି, ସଖି ମାଳତି, ତୁମ୍ଭେ ଦୁହେଁ ଯାଇ ଶୀଘ୍ର ପାନ-ଗୁଣ୍ଡି ଆଣ ।
ମାଧ ।— ଫୁଲମାଳ ?
ଲୀଳା ।— ସେହି ପୀଠ ଉପରେ ରଖି ଯାଅ—ସୂତ୍ରାତ ଘଟିଲାଣି ।
ମାଧ, ମାଳ ।— ହେଉ, ( ଫୁଲମାଳ ପୀଠ ଉପରେ ରଖି ପ୍ରସ୍ଥିତା । )
ମାଧ ।— ଆହା ଏଠା ସ୍ତ୍ରୀ ବିଦ୍ୟାଳୟରେ କେତୋଟି ଛାତ୍ରୀ ହେଲେଣି ?—ମୁଁ ସୁର ପଢ଼ ହେଲା ଦେଖିବାକୁ ଯାଇ ନାହିଁ ।
ଲୀଳା ।— ସେ ଦଶ ପନ୍ଦରଜଣ ଦେଖିଥିଲି । ଆଜ ହେଲେଣି ପଚିଶ । ମୁଁ ଦଶ ଦଶ ଦିନ ଯେତେ ଯେଉଁଠାରେ ଭରା ଅଛନ୍ତି ସମସ୍ତଙ୍କୁ କେତେ ବ

ଦେଶର ଜଡ଼ ଭାବ ଆଣୁଛ। ସ୍ତ୍ରୀଙ୍କ ବଶ୍ୟ, ମୁଁ ଜାହାକୁ ମାଣ୍ଡେ ଯେମନ୍ତ
ବାଡ଼ୁଥିଲି ସେମନ୍ତ ବିଧବା ସମସ୍ତେ ଉଳମାଣ୍ଡ ଭାଗ୍ନି ନ କରି ଅଛନ୍ତି।

ସାଧ।— ଅସିଦେବ। ସେମାନେ ଦେଖୁଛନ୍ତି ବିଦ୍ୟାର କେମନ୍ତ ମହିମା—କେମନ୍ତ
ତୁମ୍ଭେ ବାଲବିଧବା ହୋଇ ବିଦ୍ୟାପ୍ରଭାବରୁ ଜୀବନକୁ ସାର୍ଥକ କରୁଛ,
କେମନ୍ତ ତୁମ୍ଭର ଚରିତ୍ରଗୁଣରୁ ବିଦ୍ୟାବିରୋଧୀ ଦଳର ଲୋକମାନେ
ଶଙ୍କିତ ହୋଇ ଘରେ ଥାଇ ବଣବୁଦାରେ ଲୁଚି ବୁଲିଲାପରି ହୋଇଛନ୍ତି!
ଯେତେବେଳେ ସମସ୍ତ ଘରର କନ୍ୟାମାନେ ପାଠ ପଢ଼ିବେ, ଯେତେ-
ବେଳେ ଗୋଟିଏ ହୋଇ ବିଧବା ଅଶିକ୍ଷିତା ନ ରହିବେ ସେତେବେଳେ
ବିଦ୍ୟାର ଗୌରବରୁ ବିବାହର ବୟସ ବଢ଼ି ବାଲ୍ୟବିବାହ ରହିତ ହେବା
ସଙ୍ଗେ ସଙ୍ଗେ ବାଲବିଧବାର ସଂଖ୍ୟା ଊଣା ହେବ ଏବଂ ସଙ୍ଗେ ସଙ୍ଗେ
ବିଧବାଙ୍କ ଚରିତ୍ର ମାର୍ଜିତ ହୋଇ ସମାଜ ନାନା ପ୍ରକାର ପାପରୁ ମୁକ୍ତ
ହେବ। ମୁଁ କଲେଜରେ ଥିଲାବେଳେ ସ୍ତ୍ରୀଶିକ୍ଷା ଚଳାଇବାର କେତେ
ପାଞ୍ଚ ପାଞ୍ଚୁଥିଲି। ସେତେବେଳେ କିଏ ଜାଣିଥିଲା କି ତୁମ୍ଭ ଭଳି ଉଦାର-
ଚରିତା ଲକ୍ଷ୍ମୀ-ସରସ୍ୱତୀର ବରପୁତ୍ରୀର ସାହାଯ୍ୟ ପାଇ ଏତେ ସତ୍ୱର
କାର୍ଯ୍ୟ ଦେଖି ପାରିବ?

ଲୀଳା।— କାହିଁକି? ତୁମ୍ଭେ ତ ମୋର ପଥ ଜୀବନରେ ପାଇଛ। ସ୍ତ୍ରୀଶିକ୍ଷା କୋହଳେ
ଦେଶର କେବେ କିଛି ଉନ୍ନତି ହେବ ନାହିଁ ବୋଲି ମୋର ଧାରଣା
ବଳବତୀ ହେବା ସମୟରୁ ମୁଁ ବରାବର ଲେଖିଛି।

ସାଧ।— ଲେଖିଛ ସତ, ମାତ୍ର ଲେଖାରେ ଆଉ କାର୍ଯ୍ୟରେ ଅନେକ ସ୍ଥଳରେ
ପ୍ରଭେଦ ଦେଖାଯାଏ। କେବଳ ସ୍ୱାହା ପଦ ଯେ ତୁମ୍ଭଠାରେ ସାର୍ଥକ
ହୋଇଛି, ଏହା ମୁଁ ଜାଣି ନ ଥିଲି। ଏଠାକୁ ଆସିବା ଦିନରୁ ଦେଖୁଛି
ତୁମ୍ଭର କଥାରେ ଆଉ କାର୍ଯ୍ୟରେ କିଛି ମାତ୍ର ଅମେଳ ନାହିଁ।

[ ମାଧବର ପାନପାତ୍ର ସହିତ ପ୍ରବେଶ।

ମାଧ।— ( ପାନପାତ୍ର ସାଧବ ଆଗେ ଥୋଇଦେଇ ) ସ୍ୱାମୀଙ୍କ ଅସି ପଶ୍ଚିମ ମୁଳକର
ଦେଖିବାକୁ ଗଲେ—ତୁମ୍ଭହାତି ଯିବାପାଇଁ କହିଛନ୍ତି।

ଲୀଳା।— ( ବ୍ୟସ୍ତଭାବେ ) ସ୍ୱାମୀଙ୍କ ପଶ୍ଚିମଗଲେ?—ମାଲତୀ କୁଆଡ଼େ ଗଲା?

ମାଧ।—ମାଲତୀ ଦଣ୍ଡା ରଖିଦେଇ ଅଛି—ମୁଁ ଆଗେ ବାର୍ତ୍ତା ଦେବାପାଇଁ ଦଉଡ଼ି
ଆସିଲି।

ଲୀଳା।— ( ସାଧବକୁ ପାନ ଦେଇ ) ତୁମ୍ଭେ ଷ୍ଟୁଡେଣ୍ଟ ଦେଖିଥିବ?—କେମନ୍ତ
ସର୍ବୀହୋଇଛି—ନକଲୁ ଅଛି?

ସାଧ ।— ଆଉ ପଗ୍ଭରବାକୁ ଅଛି ! ମୁଁ ବିଲାତରେ ଅନେକ ଘର ଦେଖିଛି ମାତ୍ର ଏମନ୍ତ ସହରେ ଏତେ ସ୍ଥାନ ମାତ୍ର ଏତେ ସୁନ୍ଦର ଘରଟିଏ ଦେଖି ନାହିଁ ।—ଇଷ୍ଟିମେଟ ଭୁଲ ଥିଲା । ସଂଶୋଧନ ହୋଇଛି ?

ଲୀଳା ।— ଆଜ ଶରେନ୍ଦ୍ରଙ୍କୁ ଇଞ୍ଜିନିୟର ସାହେବଙ୍କଠାରେ ବସାଇ ଆସିଲି—ସଂଶୋଧନ ହେଲାପରେ ସେ ନେଇ ଆସି ମୋତେ ଦେଖାଇଲେ ।

ସାଧ ।— କେତେ ଠିକ୍ ହେଲା ?

ଲୀଳା ।— ସ୍କୁଲଘର ଲକ୍ଷେଟଙ୍କା ଆଉ ଛାତ୍ରାବାସ ପଚାଶହଜାର ।

ସାଧ ।— ଉଦ୍ୟାନରଣ ଓ ପୁସ୍ତକାଳୟ ଲକ୍ଷେ ଟଙ୍କା ।

ଲୀଳା ।— ମୋର ରହିଁବେ ତଳେ ସନ୍ତୋଷ ନାହିଁ । ମୁଁ ଯଥାସର୍ବସ୍ୱ ଏଥିରେ ଉତ୍ସର୍ଗ କରିଛି—ଦୁଃଖିନୀର ଧନ ଭଗବାନ୍ ଶିକ୍ଷା କାର୍ଯ୍ୟରେ ଲଗାଇଲେ, ମୋର ଏଥିରେ ମୋକ୍ଷାନନ୍ଦ ଭୋଗ ହେଉଛି ।

ସାଧ ।— ତୁମ୍ଭେ ମାନବୀ ନୁହଁ—ଦେବୀ ! ସାହେବମାନେ ତୁମ୍ଭର ଯେ କେତେ ପ୍ରଶଂସା କରନ୍ତି ତୁମ୍ଭେ ଜାଣ ନାହିଁ । ସେମାନେ କହୁଛନ୍ତି ଯେ ଜଣେ ଗାଉଁଲୀ ବ୍ରାହ୍ମଣକନ୍ୟା ଇଂରାଜୀରେ ଏତେଦୂର ପାରଦର୍ଶିତା ଲଭି ଦେଶେ ଲୋକଙ୍କର ଏତେ କାର୍ଯ୍ୟରେ ଲାଗିବା ସ୍ୱପ୍ନରେ ସୁଦ୍ଧା ଅନୁଭବ କରି ନ ଥିଲେ । ଗବର୍ଣ୍ଣମେଣ୍ଟ କଲେଜଘର ଓ ଅର୍ଥଶାସ୍ତ୍ରର ପଢ଼ା ହେବାପାଇଁ ଦାନ ଦେବାକୁ କହୁଥିଲ ତାହା ଠିକ୍ ହେଲା ?

ଲୀଳା ।— ମୁଁ ସ୍ଥିର କରିଛି ସେ କଲେଜକୁ ଦୁଇଲକ୍ଷ ଟଙ୍କା ଦେବି । ପ୍ରାଥମିକ ଶିକ୍ଷା ସକାଶେ ଉତ୍କଳର ନାନାସ୍ଥାନରେ ବିଦ୍ୟାଳୟ ଘର ଓ ଛାତ୍ରାବାସ ସକାଶେ ପାଞ୍ଚଲକ୍ଷ ଆଉ ବୈଜ୍ଞାନିକ ଶିକ୍ଷାର ଘର, ଯନ୍ତ୍ରାଳୟ ଓ ଛାତ୍ରାବାସାଦି ସକାଶେ ଦଶଲକ୍ଷ ଦିଆଯିବ ।

ସାଧ ।— ଟଙ୍କା ସଙ୍କୁଳିବ ?

ଲୀଳା ।— ହେ ସ୍ୱାମୀ ତୁମ୍ଭେ ନ କର । ଯଥେଷ୍ଟ ଟଙ୍କା ମୋ ହାତରେ ଅଛି—ନ ହେଲେ ଦେଶକୁ ଦ୍ୱାରଦ୍ୱାର ବୁଲି ଚନ୍ଦା ଉଠାଇବି । ଜଣେ ସ୍ତ୍ରୀଲୋକ ଉଦ୍ୟୋଗ କରୁଥିବା ଦେଖି ଅବଶ୍ୟ ସମସ୍ତେ ଯାହାରୁ ଯେତେ ସାହାଯ୍ୟ କରିବେ । ମୋର ଏତେକାର୍ଯ୍ୟ ତୁମ୍ଭର ସହାୟତାରୁ ବିଶେଷରୂପେ ହେଉଛି ଆଉ ଶରେନ୍ଦ୍ର, ଆନନ୍ଦ, ଅକ୍ଷୟ ଓ ନୀଳକଣ୍ଠ ପ୍ରଭୃତି ଶିକ୍ଷିତ ସମାଜର ସଭ୍ୟମାନେ ପ୍ରାଣପଣେ ମୋତେ ସାହାଯ୍ୟ କରୁଛନ୍ତି ।

ସାଧ ।— ଈଶ୍ୱର କରନ୍ତୁ ତୁମ୍ଭର ସାଧନା ଫଳବତୀ ହେଉ ।

ଲୀଳା ।— ମୋର ସଂସାରରେ କେହି ନାହିଁ । ବୋଉ ଗଲା ଦିନରୁ ସଂସାର ଶୂନ୍ୟ
( ଅଶ୍ରୁମୋଚନ । )

ସାଧ ।—ପୁଣି କାହିଁକି ?

ମାଧ ।—ଛି ସଖି, ଭଲକଥାର ଉତ୍ତର—କଥା କହୁଁ କହୁଁ କାନ୍ଦୁଛ ! (ବସ୍ତ୍ରାଞ୍ଚଳରେ ଲୁହ ପୋଛିଦେବା ) ।

ଶୈଳା ।—ମୋର ସଂସାର ଶୂନ୍ୟ ହୋଇଥିଲା । ସ୍ୱାମୀଙ୍କ ଈଶ୍ୱରପ୍ରେରଣ ହୋଇ ବୋଉ ମଙ୍ଗଳ ଦେଶରେ ଆଗରୁ ଯେମନ୍ତ ମୋତେ ସଂସାରର ଉପ ଯୋଗୀ କରିବାପାଇଁ ଏ ଦେଶକୁ ଆସିଥିଲେ । ସେ ତୁମ୍ଭଙ୍କୁ ସଖୀ ଆଉ ଏ ସଖୀମାନଙ୍କୁ ଜଣ୍ଡି ଦେଇ ମୋତେ ବିଦ୍ୟାଳୟର କାର୍ଯ୍ୟରେ ଲଗାଇ-ଦେବାରୁ ମୁଁ ଚଞ୍ଚଳ ହୋଇ ରହିଁଲେ ଦିନ କାଟୁଛି । ଭଗବାନ୍ କରନ୍ତୁ ମୋର ଯଥାସର୍ବସ୍ୱ ରହିଁରେ ଲାଗି ମୋର ଜୀବନ ସାର୍ଥକ କରୁ ।—ଏଥି ଆମର ସ୍ୱରୂପ ଗୁମାସ୍ତା କୃଷ୍ଣଚନ୍ଦ୍ରଦାସ ପରି ବିଶ୍ୱାସୀ ଲୋକର ମିଳିବ ନାହିଁ ।

ସାଧ ।—ହଁ। ଠିକ୍—ସେ ନ ଥିଲେ ଆଜି ଗୁମାସ୍ତାଏ ତୁମ୍ଭମାନଙ୍କୁ ଦାଣ୍ଡରେ ଭିକାରି କରି ଛାଡ଼ି ଦେଇଥାନ୍ତେ । ଦେଶର କେତେ କେତେ ଧନୀମାନେ ଗୁମାସ୍ତାଙ୍କ ହାତରେ ସର୍ବସ୍ୱାନ୍ତ ହୋଇ ଉପବାସ-ଶୋକରେ ଛଟପଟ ହେଉଛନ୍ତି । କୃଷ୍ଣଚନ୍ଦ୍ରଦାସ ସାକ୍ଷାତ୍ ଦେବତା ଆଉ ତାଙ୍କ ସ୍ତ୍ରୀ ଯୋଗ୍ୟପତିର ଯୋଗ୍ୟା-ପତ୍ନୀ—ସାକ୍ଷାତ୍ ସତୀଲକ୍ଷ୍ମୀ । ସେ ମୋତେ ମାଠିଁ ବଳି ଅଧିକ ସ୍ନେହ କରନ୍ତି । ଚାଲ ଏବେ ଏଠାକଥା ବନ୍ଦ କରି ବିଦ୍ୟାଳୟ ଗୃହ ଦେଖିଯିବା—ସ୍ୱାମୀ ଅନାଇଥିବେ ।

ଶୈଳା ।—( ଉଠି ) ହେଉ ଚାଲ

ମାଧ ।—ଆଉ ଫୁଲହାର ?

ଶୈଳା ।—ଭଲ ମନେ କଲ ! ସଖି, ବଗିଚା ବାଲ୍ଟି ଉଦ୍ୟାନରୁ ଖାଇଯିବାଟା ଭଲ ନୁହେଁ । ଗୋଟିଏ ହାର ତାଙ୍କୁ ପିନ୍ଧାଇଦିଅ—ଆଉ ହାରଟି ମୁଁ ସଙ୍ଗେ ନେଇଯିବି, ବିଦ୍ୟାଳୟ ଗୃହଠାରେ ସ୍ୱାମୀଙ୍କି ପିନ୍ଧାଇଦେବି ।

ଚମ୍ପା ।—ଏ ବଡ଼ିଆ କଥା ।

ମାଧ ।—ମୁଁ ଏଇ ଫୁଲଗୁଚ୍ଛା ନେଇଁ ଧନ୍ୟ ହେଉଥିଲି । ( ଫୁଲହାରଟିଏ ସାଧବଙ୍କ ଗଳାରେ ଲମ୍ବାଇ ଦେଇ ) ଭଗବାନ୍ କରନ୍ତୁ ସଖୀଙ୍କ ପ୍ରତି ଚିରକାଳ ତୁମ୍ଭର ଅନୁରାଗ ଥାଉ ଏବଂ ସଂସାରରେ ତୁମ୍ଭର ଯଶଃସୌରଭ ଚତୁର୍ଦ୍ଦି-ଗରେ ବିସ୍ତୃତ ହେଉ ।

ସାଧ ।—ମୋର ଏତେଷରକ ସୌଭାଗ୍ୟ ହେବ ବୋଲି ମୁଁ ଏଠାକୁ ଆସିଲାବେଳେ ଅନୁମାନ ସୁଦ୍ଧା କରି ନ ଥିଲି ।—ତୁମ୍ଭ ସମସ୍ତଙ୍କୁ ମୁଁ ଏଥିସକାଶେ ଧନ୍ୟ-ବାଦ ଦେଉଛି । ଭଗବାନ୍ କରନ୍ତୁ ସଖୀ ମୋଠାରୁ ଅଧିକ ଯଶସ୍ୱୀ ହୋଇ ନିଜ ମାତୃଭୂମିକୁ ଧନ୍ୟ କରନ୍ତୁ ।

ଚମ୍ପା ।—ତୁମ୍ଭର କୁଣ୍ଡ ସୁକୁଣ୍ଡ ହେଉ ।

ମାଧ ।—ତୁମ୍ଭର କୁଣ୍ଡରେ ଫୁଲଚନ୍ଦନ ପଡ଼ୁ । ( ଅନ୍ୟ ଫୁଲହାର ଉଠାଇନେବା । )

ଲୀଳା ।—ଆସ ଉତ୍ତର ହେଉଛ ।

[ ଆଗେ ଲୀଳ ବତୀ, ତତ୍ପଶ୍ଚାତ୍ ମାଧବୀ, ଚମ୍ପା ଓ ସାଧ୍ୱ ବର ପ୍ରସ୍ଥାନ ଓ ଅଦୃଷ୍ଟକୁମାରୀମାନଙ୍କର ଗୀତ ଗାଉଁ ପ୍ରବେଶ ।

ଅ, କୁ, ।—( ନୃତ୍ୟ ସହିତ ଗୀତ । )

ରାଗିଣୀ ଝିଞ୍ଜିଟ । ତାଳ ଖେମଟା ।

ବିଦ୍ୟା-ଦାନଠାରୁ ନାହିଁ ଆନ ।

ଜଗତ ସୁଗତି-ମୁକତି-ବିଧାନ । ଘୋଷା ।

ବସନ-ଭୂଷଣ—　　　ଧନ-ଅନ୍ନଦାନ
ଯେତେ ଯା କରିବ　　ହେବ ଅକାରଣ,
ବିଦ୍ୟାରେ ବଢ଼ିବ　　ସୁଫଳ ମିଳିବ—
　　ଲାଳନ-ପାଳନ-ଧାରଣ-କାରଣ । ୧ ।

ସଞ୍ଚିତ ସମ୍ଭାର　　ଶିକ୍ଷାସ୍ରୋତେ ସାର,
କୀରତି ଲସାର　　ସୁଧାଂଶୁ ପ୍ରକାର
କଳାଶ୍ରୟୁଁ କଳା ଲଭିବ ବିସ୍ତାର
　　କର୍ଷଣ-ଶୋଷଣ ଅଶନ-ପୋଷଣ । ୨ ।

ସଂସାରକ୍ଷେତ୍ରରେ　　ସାର ଶିକ୍ଷା-ବୀଜ,
କର ନିବେଦନ　　ସର୍ବେ ମଣି ନିଜ,
ସଫଳ ଜନମ　　ହେବ ଯେବେ ଦ୍ୱିଜ—
　　ଶ୍ୟାମଳା-ବିମଳା-ଦାମଳା-ନିଧାନ । ୩ ।

ଯବନିକା ପତନ ।



# ଚତୁର୍ଥ ଅଭିନୟ ।

ପ୍ରଥମ ଦୃଶ୍ୟ । ଗିରୀନ୍ଦ୍ରଙ୍କ ଅଶ୍ୱାଗାର ସମ୍ମୁଖ ପ୍ରାଙ୍ଗଣ ।

[ ମାଦଳ ଘେନି ବେଣ୍ଡା, ଗୁଣ୍ଡା ପ୍ରଭୃତି କନ୍ଧଯୁବକ ଓ ମଙ୍ଗଳୀ, ଶାଉଳୀ ପ୍ରଭୃତି କନ୍ଧଯୁବତୀମାନଙ୍କ ନୃତ୍ୟ ଗୀତ । ]

( ଗୀତ । )

ପୂଜନ୍ତୁ ଠାକୁରାଣୀ ଠାକୁରଙ୍କୁ ଅନାଇ । ପ୍ରେମ ଭିଆଇଲ କପାଁ ଭବେ ଗୋସାଇଁ ହେ ॥
କହିଲେ ଗୋସାଇ ପ୍ରେମ ନ ଥିଲେ କଷର । ପର ଆପଣା ହୋଇବ ସଂସାରଭର ଗୋ ॥
ବୋଇଲେ ଠାକୁରାଣୀ ପ୍ରେମ କୋହଲ୍ଲ ନାହିଁ । ସଂସାରର ତହିଁରେ ବସ ଅପି ଯାଇ ହେ ॥
ଗୋସାଇଁ ଜ୍ଞପିଲେ ଭବ ପ୍ରେମରେ ଛନ୍ଦା । ପରପୁଅ ପରଝିଅ ଏକା ତହିଁରେ ବନ୍ଧା ଗୋ ॥
ଭକତି-ପାଶେ ବନ୍ଧା ଈଶ ମାଟିରେ । ଅନ୍ତର୍ଯ୍ୟାମି ପୁରୁଷ ଛନ୍ତି ସବୁଥିରେ ଗୋ ॥
ଯେ ମାଟି ଠାକୁରାଣୀ ଶକ୍ତି ଈଶ୍ୱର । ସକଳ ଭବ ତୁହିଁରେ ଚରାଚର ଗୋ ॥

[ ଲୀଳାବତୀର ପ୍ରବେଶ ।

ଯୁବକଯୁବତୀବୃନ୍ଦ ।—ଜୁହାର ଠାକୁରାଣି ! ( ଦଣ୍ଡବତ କରିବା ! )

ଲୀଳା ।—( ହାତ ଉଠାଇ ନମସ୍କାର କରି ) ନମସ୍ତେ । ନମସ୍ତେ ! ନମସ୍ତେ !

ଯୁବକଯୁବତୀବୃନ୍ଦ ।—ଏଣିକି ଆମ୍ଭେସବୁ ନମସ୍ତେ ବୋଲିବୁଁ ।— ( ହାତ ଉଠାଇ ନମସ୍କାର କରି ) ନମସ୍ତେ !

ଲୀଳା ।— ( ଉଦ୍‌ବହୁ ) ନମସ୍ତେ ! ନମସ୍ତେ !

ମଙ୍ଗ ।— ତୁ ଆମ ନାଟ ଦେଖିଲୁ ?

ଶାଉ ।— ସତେ କେମିତି ଲାଗିଲା ତତେ ?

ଲୀଳା ।— ମୁଁ କେତେବେଳୁଁ ଆସି ଉହ୍ନଆଳରେ ଠିଆ ହୋଇ ନାଟ ଦେଖୁଥିଲି; ଭଲ ନାଟ ହେଲା—ଭଲ ଗୀତ !

ବେଣ୍ଡା ।— ବାଇଦ ଶୁଣିଲୁ ?

ଲୀଳା ।— ଭଲ ବାଜା ।— ଯେମନ୍ତ ଗୀତ ତେମନ୍ତ ବାଦ୍ୟ ।

ଗୁଣ୍ଡା ।— ଆମର ଦଶାସବୁ ଏହିପରି ।

ଲୀଳା ।— ଭଲ ଦଶା, ଚଢ଼ା ଉତାର ସବୁ ଅଛି—କାନକୁ ମଧୁର ଶୁଭିଲେ ମନକୁ ମୋହି ନିଏ ।

ମଙ୍ଗ ।— ତତେ ସବୁ ଭଲ—ତୋ ମନକୁ ସବୁ ମୋହି ନିଏ ।

ଶାଉ ।— ତୁ ଯେତେବେଳେ ଆମକୁ ଦେଖିପାରୁ ତତେ ଭଲ ନ ଲାଗିବ କିଆଁ ? ତୋପରି ଆମକୁ ଆଉ କିଏ ଦେଖି ପାରିବ ?

କୃଷ୍ଣା ।— ମେମ୍ ସାହାମାନେ କେବେକେବେ ଆସନ୍ତି ଯେ ଆମ ସଙ୍ଗରେ କଥା କହି ପାରନ୍ତି ନାହିଁ ! ସାହେବ ମେମ ଦେଖିଲେ ଆମକୁ ଟିକିଏ ଡର ଲାଗେ, ତୁ ଆମ ଝିଅଲୋକ ପାଇଁ ଇସ୍କୁଲ କରିଚୁ, ଆମକୁ ପାଠ ପଢ଼ାଉଚୁ, କେମନ୍ତେ ଆମର ଭଲ ହେବ ନ ଖାଇ ନ ପିଇ ଲାଗିଚୁ—ତୁ ଆମର ଠାକୁରାଣୀ ।

ଲୀଳା ।— ଇସ୍କୁଲ ଭଲ ହେଉଚି ?

ମଙ୍ଗ ।— ଭଲ ଇସ୍କୁଲ ହେଉଚି ! ଆଉ କୋଉଠି ପଢ଼ା କିଏ କରେଇବ ? କୋଉଠି ଏମନ୍ତେ କିଏଁ ବୁଝେଇବ ?

ବେଣ୍ଡା ।— ଆମ ଇସ୍କୁଲକୁ ଥରେ ଥରେ ମିଶ ସାହେବ ଆସନ୍ତି, ଆଉ ଯେ ଯେ ପଢ଼ା ବୁଝେଇ ଦଅନ୍ତି ମାଲୀପରି କେଜରେ ରହିଯାଏ ।

କୃଷ୍ଣା ।— ସେ ଆମ ଠାକୁର—ମିଶ ସାହେବ ଠାକୁର !

ମଙ୍ଗ ।— ଏ ଆମ ଦେଶ ମେମ ଠାକୁରାଣୀ ।

ଖାଉଁ ।— ନୂଆ ଇସ୍କୁଲ ଘର, ଠାକୁରାଣୀ, ଭଲ ହେଉଛି । ବେଞ୍ଚରେ ବସି ଡେସ୍କରେ ପୋଥି ରଖି ପଢ଼ିବାକୁ ଭଲ ଲାଗୁଚି—ତୁ ନ ଥିଲେ ଏତେ ସୁନ୍ଦର କିଏ ବାହାର କରନ୍ତା !

ଲୀଳା ।— ଆଗ କହିଲ, ପଢ଼ା ଭଲ ନା ଖାଲି ଖାଇ ପିଇ ଆଖଡ଼ା ଘରେ ନାଚିବା ଭଲ ?

ବେଣ୍ଡା ।— ଠିକ ପଚାରିଚୁ । କୋଉଠି ଆମ କଥା କିଏ ପାଇବ ? କିଏ ଘୋଡ଼ାକ ଆମ ଭଲ ଖୋଜୁଥିବ ? ଠାକୁରାଣୀ, ପଢ଼ା ଭଲ; ପାଠ ପଢ଼ି ଭଲ ହେବା ପାଇଁ ଆମେ ଝିଅଲୋକେ ସରକାରୀ ମଦ ଛାଡ଼ି ଦେଲୁ ।

କୃଷ୍ଣା ।— ମଦ ପାଇଁ ଆମ ଘରେ ପଢ଼ା ଶୁଣା ଛାଡ଼ି ଯାଉଥିଲା—ପଇସାକଉଡ଼ି ସବୁ ଯାଉ କେତେ ଲୋକ ଚୋରି ଫାଶୀ ଗଲେ, କେତେ ପ୍ରାଣ ଖାଇ ଗଲେ ।

ଲୀଳା ।— ମୁଁ ଜାଣେ ତୁମେମାନେ ସଭା କରି ମଦ ଛାଡ଼ି ଦେଉଚ—ତୁମ ମନ ଟାଣ, ତୁମ ପଣ ଟାଣ ।

ଖାଉଁ ।— ଆଉ ଆମେ ଝିଅମାନେ କି ଆଉ ମଦ ଖାଉ ନାହୁଁ ।— ଦୋକାନ ବି ଉଠି ଗଲାଣି । ଆମେମାନେ ସମସ୍ତେ ପାଠଶାଳାରେ ଲାଗି ଯାଉଚୁ । ତୁ ଆମକୁ ସାଇଛୁ, ଆମେ ସମସ୍ତେ ତୋର ମହତ ରଖିବୁ ।

ଲୀଳା ।— ତୁମେମାନେ ଯେତେକାଳ ପଢ଼ାଶୁଣା କରି ଭଲ ଆଚରଣ କରିବ ଈଶ୍ୱର ତୁମମାନଙ୍କୁ ସେତେକାଳ ସହାୟ ହେବେ, ମୁଁ ସେତେବେଳ

ତୁମର ଭଲ କରିବ । ଯେଉଁମାନେ ପଢ଼ାଶୁଣାରେ ମନ ନ ଦେବ ସେମାନଙ୍କୁ ମୁଁ ତୁମ ମୁହଁ ଚାହିଁବି ନାହିଁ ।

ରେଣ୍ଡା ।—ଆମେ ପଣ କରୁଛୁ ପଢ଼ା ଶୁଣା କରିବୁଁ—ଭଲ ହେବୁଁ ।—( ଅନ୍ୟ ଯୁବକଯୁବତୀମାନଙ୍କୁ ଅନାଇ ) କି ?

ଅନ୍ୟ ଯୁବକଯୁବତୀଗଣ ।—( ହାତ ଟେକି ) ସମସ୍ତେ ଏହି ପଣ କରୁଛୁ, କରୁଛୁ, କରୁଛୁ ।

ଲୀଳା ।—ଭଲ, ତୁମମାନଙ୍କ କଥାରେ ମୋର ବଡ଼ ସନ୍ତୋଷ ହେଲା—ମୋର ପ୍ରାଣ ଶୀତଳ ହେଲା ।

ମଙ୍ଗି ।—ହେଇ ସାହେବ ଆସିଲେ—ଆଜ ଲୁଗା ପିନ୍ଧି ଆସୁଛନ୍ତି ।

[ ସାଧବର ପ୍ରବେଶ ।

ଯୁବକଯୁବତୀବୃନ୍ଦ ।—( ହାତ ଉଠାଇ ) ନମସ୍ତେ !

ସାଧୁ ।—( ହାତ ଉଠାଇ ) ନମସ୍ତେ ! ନମସ୍ତେ ! ତୁମେମାନେ କଣ କରୁଛ ?

ରେଣ୍ଡା ।—ଆଉ କଣ କରିବୁଁ, ଆମର ନାଟ ଲାଗିଥିଲା, ଠାକୁରାଣୀ ଆସି ପାଠ କଥା ଲଗେଇଛନ୍ତି ।

ମଙ୍ଗି ।—ସାହେବ, ଧ[illegible] ଆମ ଦେଶୀ ବେଶରେ ଭଲ ଦିଶୁଛ ।

ସାଧୁ ।—ମୁଁ ତ ଦେଶିଲୋକ—ତୁମର ଭିତରୁ ଜଣେ ।

ଶାନ୍ତି ।—ତୁ ନରେଶ୍ୱ ଦରବାରକୁ ସାହେବ ହେଇଯା, ଆମକାଛକୁ ଆସିଲେ ଏହି ବେଶରେ ସବୁବେଳେ ଆସିବୁ ।

ତୃଷ୍ଣା ।—ତୁ ମନରେ କିଛି ପାଇବୁ ନାହିଁ—ଆମେ ସାହେବ ବୋଲି ଡାକିବୁଁ, ତୁ ଆସିବୁ ଏମିତି ଦେଶି ସାଜରେ ।

ସାଧୁ ।—ତୁମ ସ୍କୁଲ ଦେଖିବାକୁ ସାହେବ ବେଶରେ ଆସିବି—ସେଇଟା ସରକାରୀ କାମ । ନୋହିଲେ ତୁମ ଗାଁକୁ କି ଅନ୍ୟ କାମରେ ଆସିଲେ ମୁଁ ଦେଶୀ ବେଶରେ ବରାବର ଆସେଁ, ଆସିବି ।

ଯୁବକଯୁବତୀବୃନ୍ଦ ।—ହିଁ, ହିଁ—ସେଇଆ କରିବୁ—ହେଇ ସ୍ୱାମୀ ଆସିଲେ ।

[ ବ୍ରହ୍ମାନନ୍ଦର ପ୍ରବେଶ ।

( ହାତ ଟେକି ) ନମସ୍ତେ !

ବ୍ରହ୍ମା ।—( ହାତ ଉଠାଇ ) ନମସ୍ତେ ! ନମସ୍ତେ !—ଆଜି ତୁମମାନଙ୍କୁ ଖୁସି ଖୁସି ଦେଖାଯାଉଛି ।

ରେଣ୍ଡା ।—ଆଜ କୁଆଡ଼ରେ ଇସ୍କୁଲ ବସିଲା । ସନ୍ଧ୍ୟାବେଳୁ ଆଖଡ଼ାଘରେ ନାଟ ହେବ; ପୁଣି ଏହିକ୍ଷଣି ସ୍ୱାମୀ ବେଦ ଶୁଣାଇବେ ।—ଆଜ ଆମମାନଙ୍କର ଖୁସି ଖୁସିର ଦିନ ।

ବ୍ରହ୍ମା ।—ତୁମ୍ଭମାନଙ୍କ ବେଦ ଶୁଣାଇବାପାଇଁ ମୁଁ କହୁ ।       ଶୁଣାଇବ, ମାତ୍ର ଆଜ ପଣ କରିବ ଯେବେ ତୁମ୍ଭେମାନେ ମଦ ଛୁଇଁବ ନାହିଁ   କି ମନ୍ଦ କାମ କରିବ ନାହିଁ ଆଉ ମିଛରୁ କପଟରୁ ମଣିବ—ତେବେ ଯାଇଁ ବେଦ ଶୁଣାଇବ ।

ମଙ୍ଗ ।—ମିଛ ଅମେ କହନାହୁଁ କି କହିବୁ ନାହିଁ ।

ଖାଉଁ ।—ମଦ କି କଛୁ ନିଶା ପାଖକୁ ଯିବୁଁ ନାହିଁ ।

ଲେଣ୍ଡା ।—ମନ୍ଦ କାମ ଆମଭିତରେ ଆଉ କେହି କରିବ ନାହିଁ ।

ଘଣ୍ଡା ।—ସମସ୍ତେ ସ୍ୱାମିଙ୍କ କଥା ମାନି ଚଳିବୁଁ ।

ବ୍ରହ୍ମା ।—ଭଲ ଭଲ ! ଏହା ଶୁଣି ମୋର କର୍ଣ୍ଣ ପବିତ୍ର ହେଲା !

ଲୀଳା ।—ଦେଶଲୋକେ ଯେବେ ଏହାଙ୍କ ଭଳି ପ୍ରତିଜ୍ଞା ପାଳନ କରି ଚଳନ୍ତେ ତେବେ ଆଉ ଦୁଃଖ କଣ ଥିଲା !

ବ୍ରହ୍ମା ।—ସବୁ ଶିକ୍ଷାର ଦୋଷ । ପାଠଗୁଡ଼ାଏ ପଢ଼ି ପାସକଲେ, ସବୁ ବୁଝିଲେ, ତଥାପି ଶୂଦ୍ରପରି ଆଗର ବ୍ୟବହାର—ସେହି ମିଛ କଥା, ସେହି କପଟାଚାର, କଥାରେ ଓ କାମରେ ଆଦୌ ମେଳ ନାହିଁ, ମନରେ ସାହସ ନାହିଁ, ଯାହା ଗୋଟାଏ କଥା ଚଳିଛି ତାହା ମନ୍ଦଥିବା ଜାଣି ସୁଦ୍ଧା ଛାଡ଼ିପାରୁ ନାହାନ୍ତି ! ପାଠପଢ଼ି ଶୂଦ୍ରତ୍ୱ ନଷ୍ଟହେଲେ ତ ହେବ ଚଳଣି ସବୁ ଶୂଦ୍ରପରି । ଏମାନଙ୍କୁ ଶିକ୍ଷାଦ୍ୱାରା ବାଟକୁ ଆଣିବାକୁ ହେବ । କି ଦୁଃଖର କଥା, କନ୍ଧମାନେ ପ୍ରତିଜ୍ଞା କରି ମଦ ଛାଡ଼ିଲେ ଆଉ ଶିକ୍ଷିତ ସଭ୍ୟ ଲୋକମାନେ ତାହା ଛାଡ଼ିପାରୁ ନାହାନ୍ତି !

ସାଧ ।—ମୋର ବିଶ୍ୱାସ ଏହି କନ୍ଧମାନଙ୍କ ଦୃଷ୍ଟାନ୍ତ ଆଉ ଆମ୍ଭମାନଙ୍କୁ ଦେଖି ତାଙ୍କର ମତିଗତି ବଦଳିଯିବ । ଶିକ୍ଷିତସମାଜର ସଭ୍ୟମାନେ ଲୋକଙ୍କ ବାଟକୁ ଆଣିବାରେ ଲାଗିପଡ଼ି ଖୁବ ଯତ୍ନ କରୁଛନ୍ତି ।

ବ୍ରହ୍ମା ।—ସେମାନେ ଅଶେଷ ଧନ୍ୟବାଦର ପାତ୍ର ! ଏମନ୍ତ ସହିଷ୍ଣୁ, ଏମନ୍ତ ଶାନ୍ତ, ଏମନ୍ତ ତେଜସ୍ୱୀ, ଏମନ୍ତ ସଚ୍ଚରିତ୍ରସମ୍ପନ୍ନ ଆଉ ଏମନ୍ତ କର୍ମଶୀଳ ଲୋକ ମୁଁ ଅଳ୍ପ ଦେଖିଛି । ସେମାନେ ଯେପରି ଧୈର୍ଯ୍ୟଧରି କାର୍ଯ୍ୟ କରୁଛନ୍ତି ମୋର ବିଶ୍ୱାସ ସମସ୍ତଙ୍କୁ ବାଟକୁ ଆଣିବେ । ସେମାନେ ଆର୍ଯ୍ୟ—ପ୍ରକୃତ ଆର୍ଯ୍ୟ ଶୋଣିତ ଅଦ୍ୟାପି ସେମାନଙ୍କ ଧମନୀରେ ପ୍ରବାହିତ ହେଉଛି ।

ଲୀଳା ।—ସେମାନେ ଅନେକ ସଜାଡ଼ି ଆଣିଲେଣି ।

[ ବୀରେନ୍ଦ୍ର ଓ ନୀଳକଣ୍ଠର ପ୍ରବେଶ ।

ବୀରେ, ନୀଳ ।—( ହାତ ଉଠାଇ ) ନମସ୍ତେ !

ଅନ୍ୟ ସମସ୍ତେ ।—(ଉଠିକରି) ନମସ୍ତେ !

ଶୀଳ ।—ସ୍ଥଳପରେ ସମସ୍ତ ପ୍ରସ୍ତୁତ ହୋଇ ରହିଛି ।

ବୀରେ ।—ଶିକ୍ଷିତସମାଜର ସମସ୍ତ ସଭ୍ୟମାନେ ସେଠାରେ ଉପସ୍ଥିତ—ଆପଣମାନେ ଗଲେ ବେଦପାଠ ଆଉ ଶ୍ଳୋକ ଆଦି ଯଥା ନିୟମରେ ହେବ ।

ବୃଦ୍ଧ ।—ତଥାସ୍ତୁ । ଆଉ ବିଳମ୍ବ କାହିଁକି ?—ଚାଲ ।

ଯୁବତୀଗଣ ।—ସ୍ୱାମୀଜି, ଆଜ ଆମର ଖୁସିର ଦିନ । ଏବେ ଶର୍ଚ୍ଚଙ୍କର ଠାକୁରାଣୀ ଆମପାଇଁ ଇସ୍କୁଲ କରିଦେଲା, ଯେଉଁ କାଳେ ଆମେ ତା ଝିଅ ଥିଲୁଁ- ଆଜ ଆମକୁ ଝିଅପରି ପାଳିଲା, ଆଜ୍ଞା ହେଲେ ଆମେ ତାକୁ ହାତ ଘୋଡ଼ାରେ ବସାଇ ବୋହିନିଯାନ୍ତୁ ।

ଯୁବକଗଣ ।—ସ୍ୱାମିଜି ! ଆମ ସାହେବ ଆମ ବାପପରି,—ସବୁବେଳେ ଆମ ଭଲ ପାଇଁ ଠାକୁରାଣୀ ପାଖେ ପାଖେ ଥାଇ ପଢ଼ାଶୁଣା ଠିକକରି ଦେଉଚ । ଏ ଶୁଭ ବେଳରେ ହୁକୁମ ହେଲେ ଆମେମାନେ ବାହାରେ ବସାଇ ତାଙ୍କୁ ଇସ୍କୁଲ ଯାଏ ନେଇଯିବୁଁ ।

ବୃଦ୍ଧ ।—(ଆନନ୍ଦରେ ଗଦଗଦ ହୋଇ) ହେଉ ହେଉ, ତୁମ୍ଭମାନଙ୍କ କଥାରେ ମୋର କିଛି ମନା ନାହିଁ । (ଅଙ୍ଗୁଳି ନିର୍ଦ୍ଦେଶ ପୂର୍ବକ) ଏ ତୁମ୍ଭର ଠାକୁରାଣୀ, ଏ ତୁମ୍ଭର ଠାକୁର । ତୁମ୍ଭେମାନେ ମନ-ଇଚ୍ଛା ତାଙ୍କୁ ଅର୍ଚ୍ଚନା କର, ସେଥିରେ ମୋର ସ୍ଥିର ଆନନ୍ଦ । ( ଶୀଳାକୁ ଅନାଇଁ ) ମାଁ ଶୀଳା ! ଯେ ହୃଦୟ ଯେତିକି କୃତଜ୍ଞତା ଦେଖାଇବାକୁ ପ୍ରସ୍ତୁତ ତାହାଠାରୁ କୃତଜ୍ଞତା ସନ୍ତୁଷ୍ଟ ଚିତ୍ତରେ ନ ନେବା ଅମନୁଷ୍ୟତା । ( ସାଧବକୁ ଅନାଇଁ ) ବତ୍ସ ସାଧବ ! ତୁମ୍ଭେ ଆପଣା ଗୁଣରୁ ଏମାନଙ୍କ ମନ କିଣିଛ—ଏମାନେ ସ୍ୱଚ୍ଛ ମନରେ ଯାହା ଦେବାକୁ ଉଦ୍ୟତ ତାହା ନ ନେଲେ ମହତ୍ତ୍ୱର ଖର୍ବ ଓ କରାନ୍ତ ଭଣା କଥା ହେବ । ସୁତରାଂ ପ୍ରସ୍ତୁତ ହୁଅ—ମୁଁ ବି ଏହା ଦେଖି ଜୀବନ ଧନ୍ୟ କରେ ।

ବୀରେ ।—ଏହା ଅକୃତ୍ରିମ ସ୍ନେହର ଚିହ୍ନ !

ଶୀଳ ।—ଏହା କୃତଜ୍ଞତାର ପରାକାଷ୍ଠା !—ଆଜିକାଲି ଏହା ଦେଖିବା ବିରଳ ।

ଯୁବତୀଯୂଥ ।—( ହାତ ଧରାଧରି ହୋଇ ଶୀଳାବତୀଙ୍କ ହାତ ଉପରେ ବସାଇ ) ଜୟ ଠାକୁରାଣୀର ଜୟ ! ( ପ୍ରସ୍ଥିତା । )

ଯୁବକବୃନ୍ଦ ।—( ହାତ ଛନ୍ଦାଛନ୍ଦି କରି ସାଧବକୁ ହାତ ଉପରେ ବସାଇ ) ଜୟ ଠାକୁରର ଜୟ ! (ପ୍ରସ୍ଥିତ ।)

ବୃଦ୍ଧ ।—ଜୟ ସତ୍ୟସ୍ୱରୂପ ସଚ୍ଚିଦାନନ୍ଦ ଜଗଦୀଶ୍ୱରଙ୍କ ଜୟ ! (ପ୍ରସ୍ଥିତ)

ବୀରେ, ଶୀଳ ।—ଜୟ ଜଗଦୀଶ୍ୱରଙ୍କ ଜୟ !

[ ବୀରେନ୍ଦ୍ର ଓ ଶୀଳବତୀଙ୍କର ପ୍ରସ୍ଥାନ ଓ
ପଟ ପରିବର୍ତ୍ତନ ।

ଦ୍ୱିତୀୟ ଦୃଶ୍ୟ । ଅନ୍ତଃପୁର-ପ୍ରକୋଷ୍ଠ ।

[ ଲୀଳାବତୀ, କନକଲତା, କୃଷ୍ଣବିହାରୀ, ଓ ବ୍ରହ୍ମାନନ୍ଦ ଆସୀନ । ]

ବ୍ରହ୍ମା ।—ମା ଲୀଳାବତି, ମୁଁ ଆଉ ଏଠାରେ ଅଧିକ ଦିନ ରହି ପାରିବି ନାହିଁ ।
ମୋର ଏଠାବ୍ରତ ଶେଷହେବାର ସମୟ ଉପସ୍ଥିତ ।—
ସନ୍ନ୍ୟାସ ଆଶ୍ରମ ମୋର, ନାନାସ୍ଥାନ ବୁଲି
ସୁବାଟେ ଲୋକଙ୍କୁ ନେବା ଅଟେ ମୋର ବ୍ରତ ।
ପଞ୍ଜାବ, ମଥୁରା, କାଶୀ, ବଙ୍ଗଳା, ବୋମ୍ବାଇ
ନାନାସ୍ଥାନ ଭ୍ରମି ଲୋକେ ଦେଇ ଉପଦେଶ
ଆର୍ଯ୍ୟସଭ୍ୟସଙ୍ଗେ ଶିକ୍ଷା-ଶିଳ୍ପାଶ୍ରମମାନ
ବସାଇ ଆସିଲି, ଯହିଁ ଉଠୁଅଛି ନିତି
ବେଦଧ୍ୱନି ଯଜ୍ଞଧୂମ ଉଠାଇ ଲୋକଙ୍କୁ ।
ତୁମ ଓଡ଼ିଶାକୁ ଆସି—ଭଗବାନଲୀଳା !—
ତୁମ୍ଭନାମ ସଙ୍ଗେ ହେଲା ଯେତକ ବିଧାନ
ନିରନାସ୍ତି ଶିକ୍ଷା-ଶିଳ୍ପ-ଆଶ୍ରମସକଳ
ଅତି ସତ୍ୱରରେ, ଯହିଁ ଆର୍ଯ୍ୟସମାଜର
ନାହିଁ ପ୍ରୟୋଜନ—ଲୋକେ ଆର୍ଯ୍ୟଧର୍ମମତେ
ସ୍ୱେଚ୍ଛାରେ ଗୃହନ୍ତି; ଯହିଁ ସ୍ୱେଚ୍ଛାସ୍ରୋତ ବହି
ଗାରଗାର ନଲେ, କିବା ଅଛି ପ୍ରୟୋଜନ ?
ଶିକ୍ଷାର ପ୍ରଭାବେ ଦୂରେ ପଳାଉଛି କ୍ରମେ
କୁସଂସ୍କାର ଅନ୍ଧକାର ଆଖିଥିଲା ଲୋକେ
ଅନ୍ଧକାର ଟାଣେ ଯାହା ଜଟିଳ ବନ୍ଧନେ ।
ପଳାଉଛି ପୌତ୍ତଳିକ ଧର୍ମ ଆଗେ ଆଗେ
କର ଯୋଡ଼ିହାର, ଚନ୍ଦ୍ରଜ୍ୟୋତ୍ସ୍ନା କି ନେବେବନ୍ଦେ
ଉତ୍କଳରେ ଥାଇପାରେ ମନକୁ ଭୁଲାଇ ?
ଜାତିର ବନ୍ଧନ ସୂକ୍ଷ୍ମ ହେଉଛି କ୍ରମଶଃ
ସୁଶିକ୍ଷା-ସଭ୍ୟତା-ଅଗ୍ନି ସଂଯୋଗରେ, ବଳେ
ହେବ ଅନ୍ତର୍ହିତ । ସର୍ବେ ଏକମେଳ ହୋଇ
ଶିକ୍ଷିତସମାଜଭୁକ୍ତ ରହିବେ, ଦେଖ,
ଧାଇଁମାନ ସୁଖମୟ ବେଦମାର୍ଗେ ସୁଖେ ।
ସେହି ସେ ସମାଜଭୁକ୍ତ ଉତ୍ସାହୀ ଯୁବକେ
ସୁଖେ ଚାଲି ମନପ୍ରାଣ ଦେଶହିତବ୍ରତେ

ଅବିଦ୍ୟା-ଅନ୍ଧାର ଘରୁ ଅଳସ ଶେଯରୁ
ଉଠାନ୍ତି ଲୋକଙ୍କୁ ନିୟୋଜନ୍ତି ସମେତ ।
ତାଙ୍କ ଉତ୍ସାହରେ ହୋମ-ଶିଷ୍ଟ-ସାଧୁସଙ୍ଗ
ବିବିଧ ଯଜ୍ଞର ଧୂମ ଉତ୍କଳ-ଅମ୍ବରେ
ଚମକାଏ ଜ୍ୟୋତି—ଯାଏ ବଖାଣି ସଂସାରେ ।
ସାଧବୀ ତୁ ଲୀଳାବତୀ ସାଧୁ ସେ ସାଧବ !
ସାଧିଲ ଉଭୟେ ମୋର ଦୁଇବାହୁପର
ସ୍ୱନର ସୁକାର୍ଯ୍ୟ ।—ଅଛି ଗୋଟିଏ କେବଳ
ଅବଶେଷ ହେଲେ ତାହା ହେବ ମୁଁ ଅନ୍ତର ।

ଲୀଳା ।—(ଭକ୍ତିଭାବେ) ସ୍ୱାମୀଜି !
ହେବ, ମୁଁ ନାହାର ଯେବେ ଛାଡ଼ିବେ ଆପଣ ?
ବଜ୍ରସମ ବାକ୍ୟେ ମୋର ସ୍ତବ୍ଧ ମନଃପ୍ରାଣ !
ବିଧାତା ଆପଣା କାର୍ଯ୍ୟ ଆପଣା ଉଦ୍ୟୋଗେ
ସାଧୁଛନ୍ତି ନିତି, ମୁହିଁ କେତେ କର୍ତ୍ତା ତର
କସ ବା କରୁଛି ? ଯାହା ଅଛି ଅବଶେଷ
ଥାଉ ପଡ଼ି ଚିରକାଳ ଥାଉ ଏଠି ସ୍ୱାମୀ ।

ବ୍ରହ୍ମା ।— ମା ଲୀଳାବତୀ ! ଏ ଅଭି ଅବୋଧର କଥା ହେଲା । ତୁ ଗୁଣବତୀ, ବିଦ୍ୟାବତୀ ।
ସନ୍ନ୍ୟାସ ଆଶ୍ରମ ଭାବ ଅଛି ତୋତେ ଜଣା—
ଏକସ୍ଥାନ ବନ୍ଧୁଜନ ନୋହିବ ଆଶ୍ରୟ ।
ଭ୍ରମି ଦେଶେ ଦେଶେ ଯାଇ ଦ୍ୱାରେ ଦ୍ୱାରେ ପୁଣି
ଉପଦେଶ ଦେବା ବେଦେ ସନ୍ନ୍ୟାସ ବଖାଣି ।
ଅଛଇ ଅପାର ସ୍ନେହ ମୋ ପ୍ରତି ତୋହର
ଜଣା ଅଛି ମୋତେ, ମୋର ତୋହ ପ୍ରତି ପୁଣି
କନ୍ୟା ସମସ୍ନେହ—ବଲି କନ୍ୟାଠାରୁ ସତ
ଯେଜାକି ହୋଇଛି ତବ ମନ୍ଦ-ଘଟାନ୍ତର—
ଆବଦ୍ଧ କରୁଛି ଦୃଢ଼ ଶିକୁଳି-ବନ୍ଧନେ ।
ତଥାପି ବିଶ୍ୱାସ ମୋର ତୋର ଅନୁମତି
ହେବ ନଷ୍ଟେ ଦେଶାନ୍ତରେ ଆଶ୍ରମପାଳନେ—
ସ୍ୱରବୁ ଯେକାଳେ ହେବ ସ୍ୱଦେଶ ପ୍ରତ୍ୟାଗତ ।

ଲୀଳା ।—ସ୍ୱାମୀଜି ! ମୁ ଅତି ଅଭାଗିନୀ !

ଦେଖି ନାହିଁ ପିତା-ମୁଖ; ମାତୃଗର୍ଭଧାମରେ
ବଢ଼ିଲି ମୁଁ ପିତୃପଦେ ସ୍ୱାମୀଙ୍କି ସୁଖରେ—
ମୁ ଜାଣେ ମୋ ପିତା ଥିଲେ ପୂରବଜନମେ ।
ଏ ବାଲ-ବିଧବା ଅଟେ ଅତି ଅଭାଗିନୀ—
ଯେ କାଳେ ପାଳନ ପୁଣି ଅତି ପ୍ରୟୋଜନ
ସେ କାଳେ ବିଧାତା କଲା ବଳେ ମାତୃହୀନା !—
ନିଷ୍ଠୁର କାଳର ଗତି ନିଦାରୁଣ ବଡ଼ !
ମାତା ଛାଡ଼ି ପିତାପଦେ ସୁଖେ ଥିଲି ସେହୁ—
ସେ ଗଲେ ତାହାଙ୍କୁ ଆଉ ବଞ୍ଚାଇବ କେହୁ ! (ଲୋତକମୋଚନ ।)

ନନ୍ଦ ।—( ବକ୍ଷାଞ୍ଚଳେ ଲୁହ ପୋଛିଦେଇ ) ଛି ଲୀଳା ! କଥା କହୁଁ କହୁଁ କାନ୍ଦୁଛ !

ବୃଦ୍ଧା ।—ମା ଲୀଳା !

ଅବୋଧ ବାଳିକା ତୁହି ଅବାଧେ କାନ୍ଦୁଛୁ—
ଧୈର୍ଯ୍ୟ ନାହିଁ କିଛୁ । ଏବେ ପଢ଼ାଶୁଣା ତୋର
ଭଣା କହିଁ ହେଲା ଏଠି ? ଶୁଣ ମନ ଦେଇ,
ସନ୍ଧ୍ୟା ବଇଶ ମୋର ହୋଇଛି ଅତୀତ,
ଅଛଇ ଅଦ୍ୟାପି ଅନ୍ୟ ଅନେକ ସ୍ଥାନରେ
କରିବାକୁ କାର୍ଯ୍ୟ, ତାହା କରିବ ନିଶ୍ଚୟ ।
ସୁବର୍ଣ୍ଣଗିରିର ମୋର କେବଳ ନାରୀର
ଅବିଦ୍ୟା-ଅନ୍ଧାରେ ଲିପ୍ତ । ଉଦ୍ଧାର ତାହାର
ଏକାନ୍ତ କର୍ତ୍ତବ୍ୟ ଯେବେ ଭାରତ-ସନ୍ତାନ
ଅଟେ ମୁହିଁ । କ୍ରମେ କ୍ରମେ ଦେଶେ ଦେଶେ ତେଣୁ
ଯାଇ ଦେବ ଉପଦେଶ ଦ୍ୱାରେ ଦ୍ୱାରେ ବୁଲି ।
କର୍ତ୍ତବ୍ୟକାର୍ଯ୍ୟରେ ଯେବେ ଗଲେ ଦେହ ହେଲା
ଜୀବନ ହୋଇବ ଧନ୍ୟ, ଯିବ ମନୁଷ୍ୟତା !
ତେଣୁ ତୁମେ ମାଗୁଣି ଲୀଳା, ସୁନା ଝିଅ ମୋର,
କରିବୁ ମୋ କାର୍ଯ୍ୟ—ସାଧ ହେବ ଭୋଗଯୋଗେ ।

ଲୀଳା ।—( କରଯୋଡ଼େ ) ସ୍ୱାମୀଜୀ !

ଅବଧାନ ଦେଉ, ସୁଖେ କରିବ ମୁଁ ତାହା ।
ସମର୍ପି ଗଲେ ମୋ ମାତ ଭୂମିର ହାତରେ

ଅବଳା ବାଳାଙ୍କୁ,—ତାଙ୍କ ଏକାନ୍ତ ଅଦେଶ
ପାଳନ୍ତି ମୁଁ ଭୃତ୍ୟ ଯଥା, ସେ ପଣ ମୋହର ।
ରକ୍ଷିତ ଜୀବନ ମୋର—ଚଳୁଅଛୁ ସଦା
ଯେପରି ଚଳାଉଅଛ ସ୍ନେହ-ଡୋରେ ମୋତେ ।

କୁଞ୍ଜ ।—ଲୀଲାର କେବେ କାହାରିକଥାରେ ଅବାଧ ହୋଇନାହିଁ—ଆପଣ ଯାହିଁକି ମନେ କରୁଛନ୍ତି ସେ ପାଳିବ ନାହିଁ !

ନନ ।—ଲୀଲାପରି ଧୀର ବୁଦ୍ଧିମତୀ ଝିଅ ସଂସାରେ ଦୁର୍ଲଭ । ଏତେ ଧନ ଥାଉଁ ସେ ଗରିବପରି ଚଳେ—ଏତେଜ୍ଞାନ ଅର୍ଜି ସେ ଅବୋଧବାଳିକା !

ବ୍ରହ୍ମା ।—(ଗମ୍ଭୀରଭାବେ) ଶୁଣ ତେବେ, ଲୀଲା, ଏହା ବିଧିର ବିଧାନ,
ସ୍ତ୍ରୀଲୋକ ହାତରେ ଅଛି ସଂସାରର ଭାର
ଅର୍ଦ୍ଧେ,—ଥିବ ସଦା, ତେଣୁ ସେମାନଙ୍କ ଶିକ୍ଷା
ଅତୀବ ଉଚିତ, ତାହା ବିନା ଜାତୀୟତା
ଅସମ୍ଭବ ଦେଶେ,—ନୁହେ ସମ୍ଭବ କଦାପି
ଉପଯୁକ୍ତ ପୁତ୍ର ଦେଶ-ରକ୍ଷଣ-ତତ୍ପର,
ଅଥବା ସୁଯୋଗ୍ୟା କନ୍ୟା ଦେଶ-ଉଦ୍ଧାରିଣୀ ।
ସ୍ତ୍ରୀ-ଶିକ୍ଷାରେ ମନଃପ୍ରାଣ ଢାଳିଅଛୁ ତୁହି,
ଦେଖି ମୋର ମନେ ତୋଷ, ଅନ୍ତର ସନ୍ତୋଷ
ବାଲବିଧବାଙ୍କ ପ୍ରତି ତୋର ମନୋଯୋଗ
ଅଟଇ ଅଧିକ;—ମୋର ଏତିକି ମାଗୁଣି
ଯେ ବାଲବିଧବା ହେବ ବିବାହେ ସମ୍ମତା,
ଉପଯୁକ୍ତ ପାତ୍ର ଯାକୁ ହେବ ରୂପଗୁଣେ,
ଦେବୁ ତୁ ବିବାହ ତାକୁ ନ କରି ସଙ୍କୋଚ ।

ଲୀଲା ।—(ଈଷତ ଚଞ୍ଚଳା ହୋଇ କରଯୋଡ଼େ) ସ୍ୱାମିନ୍ !
କିପରି ଏ କାର୍ଯ୍ୟ ମୁହିଁ କରିବି ସାଧନ ?
ଶାସ୍ତ୍ରପରି ଥରେ କେବେ ମୋ ମାନସପଟେ
ପଶିନାହିଁ ଏହା ।—ମୋତେ ଲାଗଇ ସନ୍ଦେହ;—
ଉଚିତ ଅଟେ କି ଥରେ ହୋଇଥିଲେ ବିଭା ?

ବ୍ରହ୍ମା ।—(ମୃଦୁହାସ୍ୟ ପୂର୍ବକ) ମା ଲୀଲା ! ତୋ କଥା ମୋତେ ଅମୃତପରି ଲାଗୁଛି । ଭଲ ଯୁକ୍ତିଟିଏ ପକାଇଲୁ, ଦେଖ—
ବିବାହ ଉଚିତ ଥରେ ଅଛଇ ବେଦରେ—
ଦ୍ୱିତୀୟ ବିବାହେ ପ୍ରେମ ନୁହଇ ସମାନ ।

ମାନବ ନିସ୍ମିତ ତୁଚ୍ଛ ବାଲିକା ଅଜ୍ଞାନା
ହୋଇବ କିପରି ବଦ୍ଧ ବିବାହ-ବନ୍ଧନେ—
ପ୍ରେମ-ବନ୍ଧ ପ୍ରକୃତରେ ବୋଲିଇ ଯାହାକୁ ?
ବେଦେ ନାହିଁ ବାଲିକାର ଗାର୍ହସ୍ଥ-ଆଶ୍ରମ—
ବ୍ରହ୍ମଚର୍ଯ୍ୟାଶ୍ରମ ତାର ବର୍ଷ ପଞ୍ଚଦଶ ।
ବେଦହିଁ ଈଶ୍ୱର-ବାଣୀ ପରମକଲ୍ୟାଣୀ
ପାଳନୀୟା ଲୋକଙ୍କର ସଦା ଚରଣୀୟା ।
ଉଚ୍ଚିଷ୍ଟ ତାହାକୁ ଯେବେ ଜନକଜନନୀ
ପିଲାଖେଳ କରି ତାର ଭବିଷ୍ୟତ ନାଶି
ବିବାହେ କନ୍ୟାକୁ ପେଲିଦେଲେ ଭବସ୍ରୋତେ
ବୈଧବ୍ୟ-ଘୂର୍ଣ୍ଣିରେ ପଡ଼ି ବୁଡ଼ିବା ସକାଶେ,
ଅଥବା ନାନାଦ ପାପ-ମଳମଳା ଯୋଗେ
ଲଗାଇ କଳଙ୍କ କୁଳ ବୁଡ଼ାଇବା ପାଇଁ,
କିପରି ମାନିବା ତାକୁ,—ସେ ନୁହେ ବିବାହ,
ଅଶାସ୍ତ୍ରୀୟ ତାହା ସଦା ଲଙ୍ଘନ ଉଚିତ ।
ସେ ବାଳବିଧବା ସ୍ୱାମି-ପର୍ଯ୍ୟଙ୍କ-ଲଙ୍ଘିନୀ
ହୋଇନାହିଁ କେବେ ତା'ର ପୁନଃ-ସ୍ୱୀକାର
ଅଟେ ଦୋଷଶୂନ୍ୟ, ତାହା କରିବା ଉଚିତ
ସମାଜଦେଶର ହିତ-ସାଧନ ସକାଶେ ।

କୁଞ୍ଜ ।—ବାଲ୍ୟ-ବିବାହ ଯୋଗେ ଦେଶରେ କେଡ଼େ ଅନର୍ଥ ଘଟୁଛି !—ଏପରି ଜଣେ କେହି ଯୋଗ୍ୟପାତ୍ରିର ବାହାରିଲେ ନାହିଁ ଯେଉଁ ସେ ବିଷ୍ଣାଗଛ ଉପାଡ଼ି ଫୋପାଡ଼ିଦେବେ !

ଚନ୍ଦ ।—ଶୁଣିଲୁ ସ୍ୱାମୀଜି ଏ ଦେଶକୁ ଆସିଥିଲେ ଯେ ତାଙ୍କଠାରୁ ଏତେ ମରମ ମିଳିଲା !—ଆଉ ପ୍ରକୃତକଥା, ଯେ ପିଲାକନ୍ୟା ସଂସାର କଣ ଜାଣେନାହିଁ ତାକୁ ପାଠ ନ ପଢ଼ାଇ ଗୃହସ୍ଥାଶ୍ରମରେ ଛନ କାଳକ କଷ୍ଟ ଦେବା କଂସା-ଚର କାର୍ଯ୍ୟ ।

ବ୍ରହ୍ମା ।—ଯଥାର୍ଥ କହିଲ !—ଏହିତ ପିତାମାତା କଂସାଇଠାରୁ ବଳନ୍ତି ।

ଲୀଲା ।—( ଚିନ୍ତାନ୍ୱିତା । )

ବ୍ରହ୍ମା ।—ଲୀଲା କିସ ଭାବୁଛ—ମୁଁ କଣ ଯଥାର୍ଥ କହୁନାହିଁ ?

ଲୀଲା ।—ସ୍ୱାମୀଜି, ଆପଣ ମୋର ପିତାଙ୍କଠୁ ବଳନ୍ତି—ଆପଣ ମୋର ଗୁରୁ, ମୋର ପଥ-ପ୍ରଦର୍ଶକ, ମୁଁ ଆଉ କିଛି ଭିନ୍ନ କହିବ ?

ଆଜ୍ଞାଦେଲେ ଯାହା ତାହା ଲାଗୁଛି ଯଥାର୍ଥ;—
କେହି ଏତେକାଳ ଏହା ବୁଝାଇ ନ ଥିଲେ
ଏମନ୍ତ ଭାବରେ । ଅଟେ ବାଳିକା-ବିବାହ
ଅଶାସ୍ତ୍ର ଅବୈଧ—ତାହା ସଦା ଲଙ୍ଘନୀୟ ।—
ଲାଗିଛି ମୋ ମନେ କଥା—ପାଳିବି ମୁଁ ତାହା
ଶୋଭିବ ଯତ୍ନରେ ଧନ୍ୟ ପୁଣ୍ୟଶୀଳା ହୋଇ ।

ବୃଦ୍ଧା ।—ମା ଲୀଳା !

ମୁଗ୍ଧା ହେଲି ମୁହିଁ ଶୁଣି ସୁଧାବାଣୀ ତୋର !
ନ ପାରେଁ ବଖାଣି ମନେ ସାଧୁବାଦ ଯେତେ
ଉଠୁଛି ତୋପାଇଁ ! ଏବେ ଚଳିବ ନିଶ୍ଚିନ୍ତ
ମୋ କର୍ତ୍ତବ୍ୟ ପଥେ ସାକ୍ଷୀ ପ୍ରଥମେ ତୋଠାରେ,
ନୟନ-ପତୁଲା ମୋର ଗୁଣବତୀ ଲୀଳା !

ଲୀଳା ।—(ସଲଜ୍ଜଭାବେ) ସ୍ୱାମିନ !

ଏ କେମନ୍ତ କଥା—ଦିନେ ଶୁଣି ନାହିଁ ମୁହିଁ
ଶ୍ରୀମୁଖରୁ ତବ ? ମୋତେ ଏମନ୍ତ ନିର୍ଦ୍ଦୟ
ବାକ୍ୟ ପ୍ରୟୋଗିଲ କିପାଁ ? ଅଭାଗିନୀ ମୁହିଁ
ମାତୃବାକ୍ୟେ ମନଃପ୍ରାଣ ପାଦେ ତବ ଢାଳି
ପାଳୁଛି ଆଦେଶ ନିଜହିତ ମନେ କରି,
ଚାଲୁଛି ସେ ବାଟେ ଯାହା ଦେଖାଉଛ ମୋତେ
ଶ୍ରେୟସ୍କର ଧ୍ରୁବଲୋକ ଯିବା ବାଟ ମଣି ।
ମାତା ପରେ ପିତାପରି କରୁଛ ଯତନ;
ଶିକ୍ଷାଦେଲ ସଖୀ-ମେଳ ମନ ଜାଣି ମୋର
ଛାୟାପରି ସଦା ମୋର ପାଶେ ଉପସ୍ଥିତା—
ଇଙ୍ଗିତେ କରନ୍ତି କାର୍ଯ୍ୟ ରଖନ୍ତି ମୋ ମନ ।
ଶାନ୍ତିକା ସେବିକା ମୋତେ ତବ ଶୁଭାଦେଶେ
ସେବା କରେ ଅହରହ ସ୍ୱର୍ଣ୍ଣ-ପତ୍ନୀ ପରି
ସୁଧା-ଢାଳ ମନେ ସବୁ ଭୁଲାଇ କଷଣ ।
ସଖା କରଦେଲ ଯେଉଁ ସାଧବ ବହ୍ମାନେ
ସେ ମୋ କଥା ଭଲେ ହେଲେ ଚଳେ ନ ପଡ଼ାଇ
ସୁଶିକ୍ଷାବସ୍ତ୍ରରେ ଦେଶ-ଉଦ୍ଧାରେ ନିରତ !

ଅଦେଶରେ ଭବ ମୋର ଯେତେ ଥିଲା ଧନ
ଉତ୍ସୃଷ୍ଟ ସ୍ୱଦେଶପାଇଁ—ମାତାଙ୍କ ଆଦେଶ
ପାଳୁଛି ମୁଁ ନ କରିବ ଧର୍ମପଥ ଆନ ।

ବୃଦ୍ଧ ।—(ଗମ୍ଭୀରସ୍ୱରେ) ମୁଁ ଯାହା କହିଲି ତାହା ଧର୍ମ, ନୁହେ ଆନ—
ଜନନୀ-ଆଦେଶ ଭବ ଅଟଇ ବିଶେଷ ।

ଲୀଳା ।—( କାନ୍ଦ ପକାଇ ) ଜନନୀ-ଆଦେଶ !—ବୋଉ କହିଥିଲା !

ଜନ ।—( ବସ୍ତ୍ରାଞ୍ଚଳେ ଲୀଳାବତୀର ଚକ୍ଷୁରୁ ଲୁହ ପୋଛିଦେଇ ) କଥାକଥାକେ କେତେ କାନ୍ଦୁଚୁ ଲୀଳା !

ବୃଦ୍ଧ ।—ମନେ ଅଛି, ଲୀଳା, ମୋ ମା, ଯେତେବେଳେ ତୋର ମାତା ମୃତ୍ୟୁ-ଶଯ୍ୟାରେ ଥାଇ ମୋତେ ଡକାଇଥିଲେ ମୁଁ ଆସିଲାରୁ ମୋତେ କହିଲେ ଯେ ଗୋପନରେ ସେ ଯାହା ମୋତେ କହିଛନ୍ତି ମୁଁ କରିବ—ତୋର ମନେ ପଡୁଛି କି ?

ଲୀଳା ।—ହଁ ସେକଥା ମୋର ବେଶ ମନେ ଅଛି—ମୁଁ ତାହା ଶୁଣିଲା ଦିନରୁ କେତେ ମନରେ ଭାବେଁ ସ୍ୱାମିଙ୍କି ବୋଉ ମୋତେ ଲୁଚାଇ କଉ କଣ କହିଗଲେ ।

ବୃଦ୍ଧ ।—ଲୀଳା, ମୋ ମା, ତୋର ମାତା ବଡ଼ ଗୁଣବତୀ । ଏମନ୍ତ ଉଦାର-ସ୍ୱଭାବ-ସମ୍ପନ୍ନା ବୁଦ୍ଧିମତୀ ସ୍ତ୍ରୀ ମିଳିବା କଠିନ । ମୁଁ ଆସିଲା ଦିନୁଁ ସେ ସମୟେ ସମୟେ ମୋତେ ଡକାଇ ବେଦ ଶୁଣୁଥିଲେ । ମନ୍ତ୍ରବାର ଆଠଦିନ ପୂର୍ବେ କଥା-ପ୍ରସଙ୍ଗରେ ବାଲ୍ୟବିବାହ ବିଷୟ ପଡ଼ିବାରୁ ସେ ମୋ କଥାରୁ ବେଦବାଣୀ ଉତ୍ତମରୂପେ ବୁଝିପାରି କହିଲେ ଯେ ସ୍ତ୍ରୀଶିକ୍ଷା ଇତ୍ୟାଦି ଚଳାଇ ବେଳ ଦେଖି ଲୀଳାକୁ ବିବାହ ଦେବ । ପିଲାଦିନରେ ତାର ଯେ ବିବାହ ହୋଇଥିଲା ସେ ପିଲାଖେଳି—ପ୍ରକୃତପକ୍ଷେ ତାହା କେବେହେଁ ଗୃହସ୍ଥାଶ୍ରମର ପ୍ରବେଶ ହୋଇ ନ ପାରେ । ସେ ମଧ୍ୟ କେବେ ସ୍ୱାମିସଙ୍ଗ ପାଇନାହିଁ—ପାଞ୍ଚବର୍ଷରେ ବିବାହ ହୋଇ ସାତବର୍ଷରେ ବିଧବା ହେଲା । ମୁଁ ତହିଁରେ ହଁ ଭରିଲାରୁ କହିଲେ ମୋର ଝିଅକୁ ତୁ ଉତ୍ତମରୂପେ ପାଠ ପଢ଼ାଇଛୁ । ମୁଁ ଜାତିପାତି ମାନେ ନାହିଁ, ମାତ୍ର ସୁବିଧା ନ ହେବାଯାଏ ଜାତି-ଡୋର କାଟି ପାରୁନାହିଁ । ସାଧବଙ୍କୁ ଉପଯୁକ୍ତ କରିବାପାଇଁ ବୈଷ୍ଣବ ବନ୍ଧୁତ ପଠାଇବାରୁ ଲୋକେ ତାଙ୍କୁ ଅଜାତି କରିଛନ୍ତି, ମାତ୍ର ଶିକ୍ଷିତ ଯୁବକମାନେ ସଚେତ ହୋଇ ଉଠିଲେ ତାହାର ମୂଲ୍ୟ କଡ଼ାକରେ ରହିବ ନାହିଁ । ସାଧବ ମଧ୍ୟ ଖୁବ ନାମ କରି ଆସୁଛି—ତାହାଠାରୁ ବଳ ଉପଯୁକ୍ତ ପାତ୍ର ମିଳିବ ନାହିଁ—ଲୀଳାକୁ ତାହାରି ସଙ୍ଗେ ବିବାହ ଦେବ । ସ୍ୱର୍ଗତା ହେମମାଲୀ

ଯାହା କହିଲେ ପ୍ରତ୍ୟେକ ସ୍ନେହମୟୀ ମାତାର ହୃଦୟ ଫେଡ଼ି ଦେଖିଲେ ତାଙ୍କ ବିଧବା କନ୍ୟାଙ୍କ ସମ୍ବନ୍ଧରେ ଏହିମତ ଦେଖାଯିବ ।

ଲୀଳା ।— ( ବୃନ୍ଦାବନର ଗୋଡ଼ଧରି ଅଶ୍ରୁପୂରିତ ଲୋଚନରେ ) ସାଧବଙ୍କୁ ତସ୍ ଆପଣ ମୋହର ସଖା କରି ଦେଇଛନ୍ତି—ଏବେବେଳେ ତାଙ୍କ ସଙ୍ଗେ ବିବାହକଥା କିପରି ପକାଉଛନ୍ତି ?

ବୃନ୍ଦା ।— ଯଥାର୍ଥ, ସାଧବଙ୍କୁ ମୁଁ ତୋର ସଖା କରି ଦେଇଛି । ଉଦ୍ଦେଶ୍ୟ ପବିତ୍ର-ସ୍ନେହରେ ଦଳ ବାନ୍ଧିଛି—ପ୍ରଣୟ ଏବଂ ଚରିତ୍ରର ଯଥେଷ୍ଟ ପରୀକ୍ଷା ହୋଇ ଯାଇଛି । ସାଧବ ଅବିବାହିତ, ସଖାର ମର୍ଯ୍ୟାଦା ରକ୍ଷା କରିଛନ୍ତି—ସେ ତୋର ଯଥାର୍ଥ ଜୀବନ-ସଖା । ଆଉ ମନରେ ଦ୍ୱିଧା କ ପାଅ । ତୋର ମାତାଙ୍କ ଆଦେଶମତେ ମୁଁ ଯାହା କରୁଛି ତାହାର ନିଜହିତସଙ୍କାଶେ କଲ୍ୟାଣମୟୀ ବେଦବାଣୀପରି ପାଳିବା ଏକାନ୍ତ କର୍ତ୍ତବ୍ୟ ।

ଲୀଳା ।— ( ବୃନ୍ଦାବନର ଗୋଡ଼ ଛାଡ଼ିଦେଇ ଲଜ୍ଜାବନତ ମୁଖେ ) ଏଥିକି ଆଉ ମୋର ଉତ୍ତର ନାହିଁ ।

ବୃନ୍ଦା ।— ଆଉରି ଗୋଟିଏ କଥା ଅଛି । ଲୀଳା, ତୋର ମାତା କହି ଯାଇଛନ୍ତି ଯେ ଲୁଣ୍ଠବିହାରୀପରି କଣ୍ଠାସୀ ପୁତ୍ରରତ୍ନ ଉଦ୍ୟ ସଂସାରରେ ଦୁର୍ଲଭ—ତାହାକୁ ଲକ୍ଷେ ଟଙ୍କା ଦିଆଯିବ ଯେ କନ୍ୟାକଳତ୍ର ତହିଁରୁ ଅର୍ଦ୍ଧେ ପାଇବେ ।

ଲୁଣ୍ଠ ।— ( କରଯୋଡ଼େ ) ସ୍ୱାମୀଜି, ଅଧମକୁ ଏ ଯନ୍ତ୍ରଣାରେ କାହିଁକି ପକାଉଛନ୍ତି ? ଲକ୍ଷେ ଟଙ୍କା କିଏ, ମୁଁ କିଏ ? ମୁଁ ଏତେଗୁଡ଼ାଏ ଟଙ୍କା ନେଇ ମୋର ବନ୍ଧୁମାନଙ୍କୁ ଶତ୍ରୁକରି ଦଶଗାଁରୁ ସ୍ୱେଚ୍ଛାଚାରରେ ଲଗାଇ ମାମଲା-ମୋକଦ୍ଦମାରେ ହରବର ହେବାର ପ୍ରୟୋଜନ ଦେଖୁ ନାହିଁ । ମୁଁ ଯାହାଙ୍କ ଦାନା ଖାଇ ମନୁଷ୍ୟ ହୋଇଛି ତାଙ୍କର ସେବା ବିଲକ୍ଷଣ କରି ପାରିଲେ ମୋର ସେହି ଲକ୍ଷେ ଟଙ୍କା —ତହିଁରେ ସ୍ୱେଚ୍ଛାଚାରର ଡର ନାହିଁ ।

ବୃନ୍ଦା — ସେତ କହି ଯାଇଛନ୍ତି—ତୁମ୍ଭଙ୍କୁ ନେବାକୁ ହେବ । ( ଲୀଳାବତୀଙ୍କ ଅନାଇ ) ଲୀଳା, ତୁ ଦେବାକୁ ସମ୍ମତ ଅଛୁତ ?

ଲୀଳା ।— ମୋର ତହିଁରେ ବିଶେଷ ଆନନ୍ଦ—ଆଜ୍ଞା ହେଲେ ଏହିକ୍ଷଣି ଏଠାରେ ଲକ୍ଷେ ଟଙ୍କା ଗଣି ଦେବି ।

ବୃନ୍ଦା ।— ସାଧୁ ! ସାଧୁ !

ଲୁଣ୍ଠ ।— ହେଉ, ସେ ଯେବେ କହି ଯାଇଛନ୍ତି ମୁଁ ନେଇ ଆଉ ସେ ଟଙ୍କା ସ୍ତ୍ରୀ-ଶିକ୍ଷାରେ ଖର୍ଚ୍ଚ କରିବା ପାଇଁ ମୁଁ ମୁକ୍ତମନରେ ଲୀଳାବତୀଙ୍କ ହାତରେ ଦେଲି ।

ବ୍ରହ୍ମା ।— ତୁମ୍ଭର ଅଂଶର ଶହେଁରୁ ଅଧେ ।

ନର ।— ମୋ ଅଧର ମୂଢ଼ ସ୍ତ୍ରୀ-ଶିକ୍ଷା ପ୍ରକାଶେ ଲୀଳା ହାତରେ ଦେଲି । ମୁଁ ଲୀଳାବତୀଙ୍କ ସେବା କରୁ କରୁ ମରଗଲେ ମୋର ସେ କୋଟିସ୍ୱର୍ଗର ତଥା ହେବ ।

ବ୍ରହ୍ମା ।— ଧନ୍ୟ ! ଧନ୍ୟ ! ତୁମ୍ଭେ ଦୁହେଁ ରାମଚନ୍ଦ୍ର ଓ ସୀତାଙ୍କପରି କଳଙ୍କଶୂନ୍ୟ ଦେହ ଧାରଣ କରିଛ । ମୁଁ ଏପରି ସ୍ୱାର୍ଥତ୍ୟାଗ କାହିଁ ଦେଖି ନାହିଁ । ଭଲ ! ତୁମ୍ଭମାନଙ୍କ କଥାମତେ ସେ ଟଙ୍କା ତୁମ୍ଭମାନଙ୍କ ନାମରେ ଦେଶ-ଯାକ ସ୍ତ୍ରୀ-ବିଦ୍ୟାଳୟମାନଙ୍କରେ ପୁରସ୍କାର ଦେବା ପ୍ରକାଶେ ଖଞ୍ଜାଯିବ । —ତେବେ ଆଉ ବିଳମ୍ବ କାହିଁକି ? —ସଖୀମାନେ କାହାନ୍ତି ?

ନେପଥ୍ୟ ।— ଆମ୍ଭେମାନେ ଏଠି ଥାଇଁ ସବୁ ଶୁଣୁଛୁଁ ।

[ ମାଧବୀ, ମାଳତୀ ଓ ଚମ୍ପାର ପ୍ରବେଶ ।

ବ୍ରହ୍ମା ।— ତୁମ୍ଭେମାନେ ସବୁ ଶୁଣିଛ । ବର୍ତ୍ତମାନ ଲୀଳାବତୀଙ୍କ ସେବାଯାଅ—ଅନ୍ୟ ବିବାହର ଅନୁକୂଳ କର । ମୁଁ ଯାଉଛି ମାଧବଙ୍କର ବିବାହର ଅନୁକୂଳ କରିଦେବି । ( ପ୍ରସ୍ଥାନ । )

[ ଲୀଳାବତୀଙ୍କ ସଖୀମାନେ ଧରି ଆଗେ ୨ ଓ ଉତ୍ସାହ ନବକଳିକା ଓ କୁଞ୍ଜବତଂସ ପ୍ରଭୃତି ଓ ଅଦୃଷ୍ଟକୁମାରୀମାନଙ୍କର ଗୀତ ଗାଇଁ ୨ ପ୍ରବେଶ ।

ଅ: କୁ: ।— ( ନୃତ୍ୟସହିତ ଗୀତ )—

ରାଗିଣୀ ମଲ୍ଲାର । ତାଳ ଠୁଂରି ।

ଆନନ୍ଦରେ ଗାଅ ହରିନାମ ।

ଭବ-ପାରାବାରେ ଶାନ୍ତ ହୋଇବ ପୂରିବ ମନସ୍କାମ । ଘୋଷା ।
କୁମାରୀମାନ ଉପାଡ଼ି      ସ୍ନାନ ଦଅ ପଖାଡ଼ି,
ପାପତାପସବୁ ଛାଡ଼ି ଲଭ ହେବ ସୁଖେ ସ୍ୱର୍ଗଧାମ । ୧ ।
ସେ ପ୍ରଭୁ କରୁଣାମୟ      ଦେବେ ସଦା ଅନାମୟ,
ଧର୍ମବାଟେ ରହ ତାକୁ ସଂସାର-କରତା ଭଗବାନ । ୨ ।
ବେଦେ ଯା ଅଛି ବିଧାନ      ନ କର ହେବେ ତା ଆନ,
ସଂସାର-ମହାବୃକ୍ଷରୁ ମନୋମତ ଫଳ ତୋଳି ଆଣ । ୩ ।

ଯବନିକାପତନ ।



# ପ୍ରଥମ ଅଭିନୟ ।

ପ୍ରଥମ ଦୃଶ୍ୟ । ରାଜମାର୍ଗ ।

[ ମସ୍ତକରେ ପସରା ସହିତ ରାମ ଓ ଦାଆ ହସ୍ତରେ ନେଇ ଶ୍ୟାମର ଉଭୟପାର୍ଶ୍ୱରୁ ଆସି ମିଳନ । ]

ରାମ ।—( କରଯୋଡ଼ି ନମସ୍କାର କରି ) ଅବଧାନ ପଧାନେ ! ଯାଉଛ କୁଆଡ଼େ ?

ଶ୍ୟାମ ।—( ଉଦ୍‌ବେଗ ) ଅବଧାନ, ଅବଧାନ ସାନ୍ତେ ! ଜାଣନାହିଁ କି ?—ଆଜି ଭାରି ପର୍ବ ଲାଗିଛି—କୁରୁକ୍ଷେତ୍ର !

ରାମ ।—( ଆଶ୍ଚର୍ଯ୍ୟାନ୍ୱିତ ହୋଇ ) କଣ ? କୁରୁକ୍ଷେତ୍ର ? କୁରୁକ୍ଷେତ୍ରରେ ପରା ହଣାହଣି—କେଉଁଠି ହଣାହଣି ଲାଗିଛି ?

ଶ୍ୟାମ ।—ଆରେ ସେ ଏକାକଥା ହେ—ସେ ବାଣରେ, ଏ ବାଣରେ !—ବାହାଘର କଥା ଶୁଣିନାହ ?

ରାମ ।—ଆନନ୍ଦ କରଙ୍କ ଝିଅ ଲୀଳାବତୀ ସଙ୍ଗରେ ମିଶ୍ର ସାହେବଙ୍କର ?—ଉ, ସେଥିପାଇଁ କୁରୁକ୍ଷେତ୍ର ନାହିଁକି ? ବ୍ରାହ୍ମଣ-ଝିଅ ବ୍ରାହ୍ମଣ-ପୁଅକୁ ବାହାହେବ, ସେଥିପାଇଁ ଯଟାପଟ ନାହିଁକି ଲାଗିଛି ?

ଶ୍ୟାମ ।—ସେ ପରା ବଧବା—ତୁମ ଆମ ତେଲଘର କି ଗଣାଘର ହେଉଛି ଯେ ଆଉ ଗୋଟାଏ ବାହା ହେବ ?—ବ୍ରାହ୍ମଣଘରେ ରାଣ୍ଡିଝିଅ ବାହା ହୁଅନ୍ତି ନାହିଁ ।

ରାମ ।—ତା ମୁ ଜାଣେଁ । ମୁଁ ତେଲ ନେଇ ସ୍ୱାମୀଙ୍କୁ ଦେବାକୁ ଯାଇଥିଲି—ସେଠେଇଁ ଅନେକ ଲୋକେ ଜୁଣ୍ଡ ହୋଇଥିଲେ । ସ୍ୱାମୀ କହିଲେ ପିଲା-ବାହା ଲୁଣ୍ଠାଇଦେଲ—ତାହା କିଛି ନୁହେ । ମତେ ପଚାରିଲେ ଆମଘରେ ଦୁର୍ଗନ୍ଧ ଅଛି କି ନା, ମୁ ହିଁ କହିଲି । ସ୍ୱାମୀଏ ଭାରି ବେଦ ପଢ଼ିଛନ୍ତି—ମୁଁ ପଚାରିଲି ବେଦରେ ଦୁର୍ଗନ୍ଧ ଅଛି ? ସ୍ୱାମୀ କହିଲେ ଦୁଇଥର ବାହା ବେଦରେ ମନା, ତେବେ ନିୟୋଗ ଅଛି ଯେ ରାଣ୍ଡିଝିଅ ଜାତଭାଇଙ୍କି କହି-ପୁଛି ଯାହାର ଭାରିଯା ମରିଥିବ ତା ସଙ୍ଗେ ଘରକରିବ ।

ଶ୍ୟାମ ।—ଆରେ ସେ ଏକାକଥା—ବାଙ୍କ ମାଇଲେ ଯେ ଧରି ମାଇଲେ ସେ । ଆମର ଯେମନ୍ତ ଥୁଆଥୋଇ ତାଙ୍କର ସେମନ୍ତ ନିୟୋଗ ।

ରାମ ।—ଠିକ୍ ଠିକ୍—ଯାହାକୁ କହନ୍ତି ଶୁଖୁଲବଣା ତାକୁଇ କହନ୍ତି ମୁଢ଼ି । କାଛି-ପାଣି ଯେ କାଶିଲୋଟଣି ସେ । କେହି କହନ୍ତି ଥୁଆଥୋଇ, କେହି କହନ୍ତି ଦୁର୍ଗନ୍ଧ, ପଠାଣେ କହନ୍ତି ନିକା ଆଉ ବେଦରେ କହନ୍ତି ନିୟୋଗ ।

ଶ୍ୟାମ ।—ଅଚ୍ଛା, ବେଦରେ ତ ଅଛି, ତେବେ ଏ ବ୍ରାହ୍ମଣଗୁଡ଼ାକ କାହିଁକି ଶୁଆ-ଖୋଇ ଲଗାଉଛନ୍ତି? ଏ ଗୁଡ଼ାକ ତ ବ୍ରାହ୍ମଣ ନୁହନ୍ତି—ବଣ୍ଡ ମୂର୍ଖ ! ଯିବ ଦେଖିବାକୁ ?- ଟୋକାଏ ମେଳ ବାନ୍ଧି ତାଙ୍କୁ ସଉଡ଼ି ଦେବାପାଇଁ ଆଉ-ଗୋଟାଏ ସଭା କରି ଧାଇଁଛନ୍ତି ।

ରାମ ।—ସଭା କେଉଁଠି ହେଉଛି ?

ଶ୍ୟାମ ।—ଗାଁଆମୁଣ୍ଡ ଦୋଳମୁଣ୍ଡିଆରେ ।

ରାମ ।—ହଉ ତେବେ ଚାଲ । ଆମ ଘରବାଟେ ଯିବା—ମୁଁ ଯସରା ଥୋଇଦେଇ ଯିବ ।—ତୁମେତ ଦାଆଁ ସେଇ ଲୁଆଣ୍ଡ ଯାଉଛ !

ଶ୍ୟାମ ।—ନାହିଁ ମ, ଦାଆଟା ହାତରେ ଅଛି—ଗୋରୁଙ୍କ ପାଇଁ ବେଳ ପାଇଲେ କେତେବେଳେ ଘାସ କାଟିନେବି । ଚାଲ, ଟିକିଏ ଦେଖିକରି ଆସିବା—ଆମର କଣ ସେଠି ପାଠ ଗଲବ !

ରାମ ।—ଆରେ ଆମେତ ମୂର୍ଖ ପଢ଼ିନାହୁଁ : ସେ ବେଟାଏ ବେଟାଏ ପଢ଼ିଛନ୍ତି ଯେ ତାଙ୍କ ପାଠସବୁ ସ୍ୱାମୀ ସାରିଦେଇଛନ୍ତି । ତାଙ୍କ ହାତରେ ଅସଲ ଶାସ୍ତ୍ର, ବେଦ—ତହିଁରେ ଆଉ ଗାରମାରି ହବନାହିଁ ।—ଦେଇ ରହ, ଏଆଡ଼େ ମିଶ୍ରସାହେବ ଆସୁଛନ୍ତି । ନମସ୍ତେ କହିବଟି—ସ୍ୱାମୀ ସମସ୍ତଙ୍କୁ କହିଦେଇ-ଛନ୍ତି ।

[ ଅଶ୍ୱାରୋହଣରେ ସାଧବର ପ୍ରବେଶ ।

ଶ୍ୟାମ ।—( କରଯୋଡ଼େ ନମସ୍କାର କରି ) ନମସ୍ତେ !

ରାମ ।—( ତଦ୍‌ବତ୍ ) ନମସ୍ତେ !

ସାଧ ।—( ତଦ୍‌ବତ୍ ) ନମସ୍ତେ ! ନମସ୍ତେ !

[ କପୁରୀ ଓ ନେପୁରୀର ଦ୍ରୁତବେଗେ ପ୍ରବେଶ ।

କପୁ, ନେପୁ ।—( ଊର୍ଦ୍ଧ୍ୱଶ୍ୱାସେ ଆସି ଯୋଡ଼ହସ୍ତେ ) ସାହେବ, ତୁ ଆମକଥା ବୁଝ୍ ।

ନେପୁ ।—( ତଦ୍‌ବତ୍ ) ସାହେବ, ଆଗେ ମୋକଥା ବୁଝ୍ ।

ସାଧ ।—( ଘୋଡ଼ାରୁ ଓହ୍ଲାଇ ଲଗାମ ଧରି ) କାହିକି ? କଣ ହୋଇଛି—ତୁମ୍ଭେ-ଦୁହେଁ କଳି କରୁଥିଲ ?

କପୁ ।—( ପିଠି ଦେଖାଇ ) ଦେଖ, ପିଠି ଦେଖ ! ( ଅଙ୍ଗୁଳିନିର୍ଦ୍ଦେଶ ପୂର୍ବକ ) ଏ ମୋ ସଉ ଯାଆ ମତେ ମାଇଲା ଯେ ମୋ ପିଠି ଏଠାରୁ ଫୁଲିଯାଇଛ !

ନେପୁ ।—ସେ କାହିଁକି ମତେ ଝାଡ଼ୁରେ ଦପାହର ଦେଲା ?

କପୁ ।—ମୁଁ ଗାଁଅ ଖଣ୍ଟ ଯାଉଥିଲି, କହୁଥିଲି ଘଣ୍ଟବାଡ଼ି ରଖିଥିବୁ । ଯେବେ ଗୋରୁ ଲେମ୍ପାଇ ବସିବ, ଗାଧୋଇ ଆସି ବାଳ ସାଉଁଳୁ ସାଉଁଳୁ ପଡ଼ିବ ଯିବ —

ମୁ ଦଶହରେ ଗାଆଁ ଖଣ୍ଡି ଅଇଲାବେଳକୁ ଚୂଷୀ ଲାଗୁଛ !—ଏଥିରେ
କହିବ କାହିଁ ? ମେଡ଼େଇଲ୍ରୁ ଘର ଛୁଅ—ଯାଉଛି ଆଉଟି କୁଆଡ଼େ ଗଲା,
ଏବେ ସଜବାଜ କାହିଁକ ?

ନେପୁ ।— ( ନୋଖାନ୍ଧ୍ରା ହୋଇ ) ମୋର ମୁଁ ସଜବାଜ ହେଲ ଭାର ଜଣଗଲା ?
ସେ ଗାଆଁ ଖଣ୍ଡୁ—ମତେ କହିବ ଯେ !

ସାଧ ।— ବଡ଼ ଯାଆ, କହିଲା ତ କ ଲୁସିଗଲା ?

ନେପୁ ।— କାହିଁକ—ମୁଁ ଯାଜ ହେଲ ବୋଲ କୁଆଡ଼ୁ ଲୁସି ଆସିଥିଲ କ ?—ସେ
ଯେମତେ କହିଲା ମୁଁ ବ ସେମତେ କହିଲ । ମତେ ଯଉଁଠୁ ଝାଡ଼ୁରେ
ମାଇଲା ମୋର ଘଗ ହେଲା ମୁଁ ମାଇଲ ।

ନେପୁ ।— ମାଉବ ବୋଲ ଏମିଛ । ହଜୁର ଦେଖ ( ପିଠି ଦେଖାଇ ) ମୋର
ପିଠି କେତେଡ଼ସାଏଁ ଫୁଲିଛ !

ସାଧ ।— ( ପିଠି ଦେଖି ) ହଁ ସତେତ, ଫୁଲିଛ । ବଡ଼ ଅନ୍ୟାୟ ! ( ନେପୁସ୍ତ୍ରୀକ
ଅଡାଇ ) ତୁ ଏତେଡ଼ସାଏଁ ମାଇଲୁ ?

ନେପୁ ।— ଏହୁତ ବଡ଼ଆଡ଼ଲୁ ତୁହି ପଚାଉଚନ୍ତି ! ଯାକ ଯାକ ଲୁଚହୋଇ ଖାଲ
ମଦ ଖାଉଥିବେ ଆଉ ବଡ଼ଯାକଲୁ ଯାଉ ଶୁଣ ମାଫ ।

ସାଧ ।— ଅଚ୍ଛା, ଅଚ୍ଛା, ଚୁଲ—ତୁମ ସାମ୍ନାରେ ସେ କଥା ବୁଝିବା । ତୁମେ ଦୁହେଁ
ଘୋଡ଼ା ପଛେ ପଛେ ଅସ—ମୁଁ ଥିର ଥିର କରି ଘୋଡ଼ା ନେଉଛି ।—
ତୁମ ଘର କେଉଁଠି ?

ନେପୁ ।— ( ଅଙ୍ଗୁଳ ନିର୍ଦ୍ଦେଶ ପୂର୍ବକ ) ଅଇ ହାଡ଼ି ସାହିରେ ।

ସାଧ ।— ତୁମ୍ଭେ ହାଡ଼ିଆଣୀ ?

ନେପୁ ।— ( କର ଯୋଡ଼େ ) ହଁ ହଜୁର !

ସାଧ ।— ଅଚ୍ଛା, ଆଉ କଳି କର ନାହିଁ । ଘୋଡ଼ା ପଛେ ପଛେ ଅସ, ମୁଁ ସେହି-
ଠାକୁ ଯାଉଛି । ( ଅଶ୍ୱାରୋହଣ ପୂର୍ବକ ପ୍ରସ୍ଥିତ । )

[ ନପୁସ୍ତ୍ରୀ ଓ ନେପୁସ୍ତ୍ରୀର ପ୍ରସ୍ଥାନ ।

ଶ୍ୟାମ ।— ଦେଖିଲ, କେମନ୍ତ ଅଶ୍ୱା ଚାଳନ, କେମନ୍ତ ବୋଧ—ଯେତେ ବଦ୍‌ମା
ଫଳିଛ ତେତେ ନଇଁ ଯାଉଛନ୍ତି ! ନିସଲରେ ବସିଥିଲେ ନିସଲ ପୁଉରହ
ଥାଏ । ତାହାକୁ କଛି କହନ୍ତି ନାହିଁ, ସାକ୍ଷ ଉବାବ ଦେଖି ବୁଦ୍ଧିବଳରେ
ସମସ୍ତେ ସ୍ଥିର ହୋଇ ରହିଥାନ୍ତି ।

ରାମ ।— ପଧାନେ ! ମୁଁ ଏମନ୍ତ ଚାଳନ ଏବେ କେବେ ଦେଖିନାହିଁ ।—ନିତ ସକାଳେ
ତୁଲସୀ ଘୋଡ଼ାରେ ଚଢ଼ି ଏଗାଁ ସେ ଗାଁ ବୁଲନ୍ତେ । ମଉଲାବ ଦେ-

ଉଁଚି ହୋଇ ଟିକଏ ରହି ଦେବେ ନାହିଁ — ଯେଉଁଠି ଦେଖିଲେ ମଇଲା ଗାଡ଼ିଆଟିଏ ଜମିଲେଣି ତାକୁ ଗୋଟିଏ ବଲ ପୋଖରୀ କରି ଚାରିଆଡ଼ ସଫା କରାଇ ଗଛ ଲଗାଇ ଦେବେ ଯାହାଁ ଶଢ଼ିବେ, ଆଉ ଯେ ଯେତେ ଗୃହାସ୍ତ କରିବେ ସବୁ ତାଙ୍କ ସରଠାରେ ଫଏସଲ କରିବେ । ମୁଁ ତ କଚେରୀକି ଯାଏ ନାହିଁ —ଥରେ ଯାଇଥିଲି ସେ ସମସ୍ତେ ତାଙ୍କୁ ଧନ୍ୟ ଧନ୍ୟ କରୁଥିଲେ !

ଧର୍ମ ।— ଆଉ ପାଠଶାଳା ? ବାଡ଼ି ନାହିଁ କଣ୍ଠବ ନାହିଁ ସମସ୍ତଙ୍କ ପାଠଶାଳାକୁ ଯାଇ ସମାନ ଭାବରେ ପୁଚ୍ଛପଚ୍ଛାର କରିବେ । ଜାତି କଣ ଅଜାତି କଣ ସବୁ ପିଲାଏ ତ ତାଙ୍କୁ ଗୁରୁ କରି ମାନନ୍ତି ।—ସାହେବ, ଏମନ୍ତ ଯୋଗ୍ୟ ଏମନ୍ତ ବୋଧା ହୋଇ ନ ଥିଲେକ ସରକାର ଦେଶୀ ଲୋକଙ୍କୁ ଏଡ଼େ ବଡ଼ ହାକିମୀ ପାହୁସ୍ତି ଦେଇ ଥାନ୍ତେ !

ସମ ।— ତା ସତ ।— ଲୀଳାବତୀଙ୍କ କପାଳ ଯେ ଏମନ୍ତ ଯୋଗ୍ୟ ବର ପାଇଲେ ! ଏ ବ୍ରାହ୍ମଣଗୁଡ଼ାକ ତ ଜଳପୋଡ଼ି ମରୁଛନ୍ତି—ତାହାର ଶିଖ ଦୁଇ ଆଖିରେ ହୋଇ ଦେଖିବେ ନାହିଁ ।—ଚାଲ ତୁମର ଲୁଚୁଖେଳ ଦେଖି ଆସିବା ।

( ଉଭୟର ପ୍ରସ୍ଥାନ ଓ

ପଟକ୍ଷେପଣ ।

—○❋✳❋○—

ଦ୍ୱିତୀୟ ଦୃଶ୍ୟ । ଦୋଳମଣ୍ଡପ ।

(ବିଶ୍ୱମ୍ଭର, ଗଦାଧର, ସଦାନନ୍ଦ ପ୍ରଭୃତି ପଣ୍ଡିତମାନେ ଆସୀନ ।)

ବିଶ୍ୱ ।— ( କାନରେ ହାତ ଦେଇ ) ଓ ହୋ, କ କାଳ ହେଲା ଆସି !—ବିଧବା-ବିବାହ !! ସପ୍ତ ପୁରୁଷ ନର୍କରେ ପଡ଼ିବାର କଥା— ଯା ପୁଣି ଦେଖି-ବାକୁ ହେଲା ? ଏ ଟୋକା ଗୁଡ଼ାକ ତ ସବୁ ଖାଇଲେ—ସର୍ବନାଶ କଲେ । ସମୁଦ୍ର ପାରହୋଇ ବିଲାତ ଗଲା—ତାକୁ ପ୍ରାୟଶ୍ଚିତ୍ତ ନ କରାଇ ଜାତିରେ ନେଲେ । ମାଇକିନିଆ ଝିଅ ପଢ଼ିବାକୁ ମନା—ତାକୁ ନେଇ ଇସ୍କୁଲରେ ବସାଇଲେ । ଅଛୁଆଁ ଜାତିଙ୍କ ପାଖକୁ ଯିବାର କଥା—ତାଙ୍କୁ ପୁଣି ଇସ୍କୁଲ କରିଦେଲେ । କହନ୍ତି ବାବୁ ନାହାନ୍ତି, କହିଲା ବେଦକୁ ଟାହିଁନ କରି ଉଡ଼ାଇ ଦେଉଛନ୍ତି । ତାଙ୍କ ସଙ୍ଗେ ପୁଣି ସେ ସ୍ୱାମୀ ବୁଢ଼ାଟା କି ଚିହ୍ନ ଯେ ଯାହା ସବୁ ଅକଥା ତା ଲେଖାରେ ସବୁ ବେଦରେ ଅଛି । ଆମର ଆଉ ଚଉପୁରୁଷରେ କେହି ବେଦ ପଢ଼ି ନ ଥିଲେ ସେହିଟା ଏକା ପଢ଼ିଛି !

ସଦା ।—ବେଦ କଣ ତାହାର ଘରେ ଥିଲା ଆଉ ସ୍ମୃତି ସବୁ ବେଦ ପାଶ ଦେଇ ଯାଇ ନ ଥିଲା ? ଗୁଡ଼ାଏ ଏଣ୍ଡେଣ୍ଡୁ ସ୍ମୃତି ଛାଡ଼ି ଦେଇ ପାରେ, ଆଉ ଟୋକାଏର ଘା ଠେଇ ଗଲା !

ଗଦା ।—ଆମ ଦେଶର କବିମାନେ ଆଉ ବେଦ ଜାଣି ନ ଥିଲେ ! ସେମାନେ ଯେ କାବ୍ୟ ସବୁ ଲେଖିଥିଲେ ତା ସବୁ କୁଆଡ଼େ ଗଲା ଆଉ ଯେତକ ପାଠ ସବୁ ସେହି ବୁଢ଼ା ସ୍ୱାମିର ବେଦରେ ! କାବ୍ୟରେ କେଉଁଠି ବିଧବା ବିବାହର ବର୍ଣ୍ଣନା ଅଛି ପଢ଼ିଛ ? ମୁଁ ସବୁ ସ୍ମୃତି ପଢ଼ି ନାହିଁ, ମାତ୍ର ଯେତେଦୂର ଜାଣେ ସ୍ମୃତିରେ ଆଦୌ ବିଧବାବିବାହ ନାହିଁ । ସେ କଥା ବ ନ୍ୟାୟରୁ ପାଉ ନାହିଁ—ମରଣ ପର୍ଯ୍ୟନ୍ତ ଯେବେ ସ୍ତ୍ରୀ ସ୍ୱାମୀ ଗଣ୍ଠି ପଡ଼ିଲା ତେବେ ବିଧବା ହେଲେ ଆଉ ବିବାହ କାହିଁ ହୋଇପାରେ ?

ବିଶ୍ୱ ।—ସେ ପରାଶର କଥା ଥରେ ପକାଇଥିଲେ–

ସଦା ।—ଆରେ ପରାଶର ଛୋଟଜାତିଙ୍କ ପାଇଁ । କଳୌ ପାରାଶରୀ ସ୍ମୃତିଃ—କଳିକାଳରେ ତ ବ୍ରାହ୍ମଣ ନ ଥିବେ, ସବୁ ଗୋଳଅସଖା ହୋଇ ଅବ୍ରାହ୍ମଣ-ଛୋଟଜାତି ହୋଇ ଯିବେ, ତେଣୁ ପରାଶର ତାଙ୍କ ପାଇଁ ବିଧବାବିବାହ କରି ଦେଇଛନ୍ତି । ଆଉ ଦେଖୁଛ, ଭାଇ, ଯେତକ ଛୋଟଜାତିରେ ପରାଶରଙ୍କ ସ୍ମୃତି ! ତହିଁରେ ଗୁଡ଼ିଆ, ତେଲି, ତନ୍ତୀ, କେଉଟ, ବାଉରି, ହାଡ଼ି, କଣ୍ଡରା, ଧୋବା, ପାଣ ଚମାର ସେହିସବୁ ଜାତିରେ କଷ୍ଟେ ମୂଳେ ଚଳୁ ଚଳୁ କାଇ ଥାଉଁ ଥାଉଁ ମନ ନ ମିଳିଲାତ ଛାଡ଼ପତ୍ର ଦେଇ ଆଉ ଗୋଟାଏ ବାହା ହୋଇ ପଡ଼ୁଛନ୍ତି ।

ଗଦା ।—ଯେମନ୍ତ ପଠାଣ ଖୀରିସ୍ତାନମାନେ କରୁଛନ୍ତି,—ଯେଉଁଠି ବିଧବାବିବାହ ସେହିଠି ଛାଡ଼ପତ୍ର ।

ସଦା ।—ସମସ୍ତେ ଅବ୍ରାହ୍ମଣ । (ଦାମ୍ଭିକ ଭାବରେ) ଆମ୍ଭେ ଯେବେ ବ୍ରାହ୍ମଣହୋଇଥିବା, ଆମ୍ଭ କାଳରେ ଯେବେ ପଇତା ଥିବ କଦାକାଳେ ଏହା କରିଇଦେବା ନାହିଁ—ଦେଖିବା କେମନ୍ତ ସେ ବିବାହ ଦେବେ । ଜାତରୁ ଯାଆନ୍ତୁ, ତେଣିକ ଯାହା ଇଚ୍ଛା କରନ୍ତୁ । ସ୍ୱାମୀ ଅଲଜୁକ ଯେମନ୍ତ ଗାଇବାକୁ, ଏ ଅତି ଅଲଜୁକ ତେମନ୍ତ ନାଚିବାକୁ ! ବେଦରେ ଗାୟତ୍ରୀ ଆଉ ଠାକୁର ପୂଜା ଓ ପଞ୍ଚପଦାଦି କ୍ରିୟାକର୍ମର ମନ୍ତ୍ର ଅଛି, ଏହା କଣ କେହି ଜାଣନ୍ତି ନାହିଁ ? — ଏ ବୃତ୍ତାନ୍ତ କେଉଁଠୁ ଏତେ ପାଠ ବେଦରୁ ପାଇଲେ ?

ଗଦା ।—ଅନେ ଠାକୁରପୂଜା କରୁଛୁଁ, ସ୍ୱାମୀ କହିଲା ବେଦରେ ମନା । ଅନେ ମାଇକନିଆ ଝିଅଙ୍କୁ ପିଲାଦିନେ ବାହା ଦେଉଛୁଁ, ସ୍ୱାମୀ କହିଲା ବେଦରେ

ମନା । ଆମେ ବ୍ରତବେଳେ ସମାବର୍ତ୍ତନ କରୁଛୁଁ, ସ୍ୱାମୀ କହିଲେ ବେଦରେ ମନା । ଆମେ ଶ୍ରାଦ୍ଧ ଦେଉଛୁଁ, ସ୍ୱାମୀ କହିଲେ ବେଦରେ ମନା । ଆମେ ପଞ୍ଚଦେବତାଙ୍କ ପୂଜା କରୁଛୁ, ସ୍ୱାମୀ କହିଲେ ବେଦରେ ମନା । ଆମେ ଗଙ୍ଗାସ୍ନାନାଦି ତୀର୍ଥ କରୁଛୁଁ, ସ୍ୱାମୀ କହିଲେ ବେଦରେ ମନା । ଆମ ପୂର୍ବପୁରୁଷରେ କେହି ବେଦ ପଢ଼ି ନ ଥିଲେ, ଯେତକ ବେଦରେ ମନା ସବୁ କରିଆଇଗଲେ !

ନବ । — ଆଉ ଯାହା କରିବାକୁ ମନା ସ୍ୱାମୀ କହୁଛନ୍ତି ସେ ସବୁ ବେଦରେ ଅଛି । ବାଲ୍ୟାବସ୍ଥାରେ ରଜସ୍ୱଳା ହେଲେ ସପ୍ତପୁରୁଷ ନର୍କରେ ପଡ଼ିବେ, ସ୍ୱାମୀ କହୁଛନ୍ତି ଷୋଳବର୍ଷ ହେଲେ ଝିଅକୁ ବିଭା ଦେବା ବେଦରେ ଅଛି । ଦରିଆ ପାର ହେବାକୁ ମନା, ସ୍ୱାମୀ କହୁଛନ୍ତି ତା ବେଦରେ ଅଛି । ଶୂଦ୍ରାଦିଙ୍କୁ ବେଦ ଶୁଣାଇବାକୁ ମନା ସ୍ୱାମୀ କହିଲେ ତା ବେଦରେ ଅଛି । ମାଇକିନିଆଁ ଝିଅ ପଦାକୁ ବାହାରିବା ମନା ସ୍ୱାମୀ କହିଲେ ତା ବେଦରେ ଅଛି । ଅଛୁଆଁ ଜାତିଙ୍କି ଛୁଇଁବାକୁ ମନା ସ୍ୱାମୀ କହିଲେ ତା ବେଦରେ ଅଛି ।—କେଉଁଠୁ ସ୍ୱାମୀ ଏ କୀରିସ୍ତାନିଆ ବେଦ ପାଇଲା ?

ସଦା । — ସେ ସ୍ୱାମୀଟା ବାଘୁଆ । ତାହା ହାତରେ ଗୁଡ଼ାଏ ମନ୍ତ୍ର ତିଆରି କରାଇ ଲେଖେଇ ଆଣିଛି ଆଉ ଯେତେ ଅଘଟନ କଥା ସବୁ ଘଟେଇ ଦଉଛି ।

ନବ । — ସେହିଟା ନିଜେ ଜଣ ତିଆରି କରୁ ନ ଥିବ କି । ସେ ଦିନ ଗଡ଼ ଗଡ଼ କରି ସଂସ୍କୃତ କହି ଗଲା । ମନ୍ତ୍ର ବନେଇଲେ ନୂଆ କି ପୁରୁଣା କିଏ ଦେଖୁଛି ? ଆମ ଜାତିରେ ବେଦ ଥାଆନ୍ତା କି ଦେଖାଇ ଦିଅନ୍ତେ । ବର୍ତ୍ତମାନ ସଭାରେ ମତ ନିଆଯାଉ ଆମକି ଯାହା ଭଲ ଅସୁଛି ତାହା ମାନିବା ନା ସ୍ୱାମୀ କଥାରେ ସବୁ ଓଲଟାଇ ଦେବା ।

ସମସ୍ତେ । — (ପାଟିକରି) ଆମର ଯାହା ଅଛି ତାହା କରିବା — ନୂଆପାଠ ପାଖକୁ ଯିବା ନାହିଁ ।

ଜନୈକବୃଦ୍ଧ । — (କମ୍ପିତ ସ୍ୱରେ) ଅଙ୍ଗରେଜ ଅମଳରେ ଯେ ଯାହାକୁ ଜଣେ ଜଣେ ତତ୍ତ୍ୱଦର୍ଶୀ ହୋଇ ଗଲେଣି—କେହି କାହାକୁ ମାନିବାକୁ ନାହିଁ ।— ବାପକୁ ତ ପୁଅ ମାନୁ ନାହିଁ କହିବ କାହାକୁ—ଅଙ୍ଗରେଜୀ ପଢ଼ି ସବୁ ଭ୍ରଷ୍ଟ ହୋଇ ଗଲେଣି । ଆମକୁ କହିଲେଣି ବୁଢ଼ା ମୂର୍ଖ । ଆମେ ଆପଣା ମହତ୍ତ୍ୱ ଆପେ ସମ୍ଭାଳି ଭୁଲ !—ଆରେ ସତି ଆପଣା ମହତ୍ତ୍ୱ ଆପେ ରକ୍ଷି ।

[ ଶ୍ୟାମ ଓ ରାମର ପ୍ରବେଶ ।

ଶ୍ୟାମ ।—ପଣ୍ଡିତେ, କଣ କରୁଛନ୍ତି ଏଠି ବସି—ସଭା ଲାଗିଛି କି ?

ହର ।—(ରାଗହୋଇ) ତୁମେ ଶୂଦ୍ର ଗୁଡ଼ାକ (ହାତ ହଲାଇ) ସେଆଡ଼େ ସେଆଡ଼େ ଥା—ଏଠି ସଭା ଲାଗିଛି ।

ରାମ ।—ନାହିଁ ଗୋସାଇଁ ଆମେ ସଭା ଭିତରକୁ ଯାଉ ନାହୁଁ—ଆପଣ ତର୍ଜ ଉଠୁଛନ୍ତି କାହିଁକି । ରେଲଟଣା ନ ହେଲେତ ତମ୍ଭେ ଚଳିବ ନାହିଁ—ସବୁ ଭିତରକୁ ଯାଇ ରେଲଗୁଡ଼ାକ ମାପି ନ ଦେଲେ ଲୁଟିମୁ ପଡ଼ି ମରିବେ—ସଭା ବେଳକୁ ଯାଆ ଯାଆ ! ଏ କି ସଭା ଲାଗିଛି ?

ହର ।—ତୋର କଣ ଗଲା ?—ଶୁଣିବାକୁ ମନ ତ ଠିଆହୋଇ ସେଠି ଶୁଣ ।

ଶ୍ୟାମ ।—ପଣ୍ଡିତଙ୍କୁ କଣ ଲାଗିଗଲା ? ଏଡ଼େ କିଆଁ ହୋଇ ଯାଉଛ କାହିଁ କି ?

ଜନୈକବୃଦ୍ଧ ।—( କର୍ଣ୍ଣ ତ ସ୍ୱରେ ) ଆରେ କାହିଁ ଏ ସଣ୍ଢିଆଙ୍କୁ ସବୁ ବାଡ଼ା ଦେବାକୁ ବସିଛନ୍ତି ଯେ ସେଥିପାଇଁ ସଭା ବସିଛି ।

ରାମ ।—ଆମଘରେ ତ ସଣ୍ଢିଆ ବାଡ଼ା ହୁଅନ୍ତି । ତମଘରେ ବାଡ଼ା ଦେଲେ ତ, ଗଲା, କଥା ଛୁଡ଼ି ଯିବ ।

ସଦା ।—ଯାହା କେବେ ହୋଇ ନାହିଁ ତାହା କିପରି ହେବ ?

ଶ୍ୟାମ ।—ଆମଘରେ ବଳଦିଆ ବାଡ଼ା ହେଉଛନ୍ତି । ଗଣ୍ଡ ହେଲେ ଦୁର୍ଗନ୍ଧ ହେଉଛନ୍ତି ।

ରାମ ।—ଯେ ଯେତେ ପାଠ ପଢ଼ିଛନ୍ତି ସେ ତେତିକି ବଢ଼ିକି ଯାଇଛନ୍ତି । ଆମେ ମୂର୍ଖ ପାଠ ପଢ଼ି ନାହୁଁ, ଆମଘରେ ବଳଦିଆ ବାଡ଼ା ହୁଅନ୍ତି, ଗୋରୁ ମଲେ ଦୁର୍ଗନ୍ଧ ହୁଅନ୍ତି । କରଣ ସାଆନ୍ତଙ୍କ ଘରେ ପାଠପଢ଼ା ପାଏ ବେଶୀ, ତେଣୁ ବଳଦିଆ ବାଡ଼ା ଦଅନ୍ତି, ଦୁର୍ଗନ୍ଧ ନାହିଁ । ତେଣିକି ବ୍ରାହ୍ମଣଙ୍କର ପୁଣି ଶାସ୍ତ୍ରପଢ଼ା ଆଉ ପାଦେ ମିଶିଲାରୁ ବଳଦିଆ ବାଡ଼ା ଦଅନ୍ତି ନାହିଁ କି ଦୁର୍ଗନ୍ଧ ନାହିଁ ।

ଶ୍ୟାମ ।—କରଣ ସାଆନ୍ତଙ୍କଠୁ ବ୍ରାହ୍ମଣେ କଣ ବେଶୀ ପାଠ ପଢ଼ିଛନ୍ତି ? କରଣମାନଙ୍କ ପାଠ ବେଶୀ —କରଣୀ ବେଶୀ, ଗୃହସ୍ଥ ବଡ଼ ।

ରାମ ।—( ହସି ହସି ) ବ୍ରାହ୍ମଣେ ସବୁ ଶାସ୍ତ୍ର ପଢ଼ିଛନ୍ତି—ସ୍ୱାମୀ ପଢ଼ା ନା—

ଶ୍ୟାମ ।—ହିଁ ହ ଯାହା କହିଲ ।—ଆମେ କ ପଢ଼ିଛୁଁ କଲ ।

ହର ।—ଆଉ କ ପଢ଼ିବ ! ପିଲାଙ୍କୁ ସବୁ ସେ ଟୋକା ଗୁଡ଼ାକ ଯେ ଯେଉଁଠି ଅଛନ୍ତି ଟାଣି ଟୁଣି ନେଇ ଇସ୍କୁଲରେ ଭର୍ତ୍ତି କରୁଛନ୍ତି ।

ଶ୍ୟାମ ।—ପିଲା ଏ ପଢ଼ିବେ ନାହିଁ ତ ଚଳିବ କିପରି ? ଲାଞ୍ଚାବାଜି ହେବ ଲକ୍ଷ ଲକ୍ଷ

ଟଙ୍କା ଖର୍ଚ୍ଚ କରି ଗାଁ ଗାଁରେ ଇସ୍କୁଲ ବସେଇ ଦେଉଛନ୍ତି, ପିଲାଏ ପଢ଼ିବେ ନାହିଁ ?

ଭଣ୍ଡ ।—ଟଙ୍କା ଗୁଡ଼ାକ ଏମିତେ ପାଣିରେ ପୋଡ଼ି ନ ଦେଇ ବ୍ରାହ୍ମଣଙ୍କୁ ଦକ୍ଷିଣା ଦେଉଥିଲେ ହେଲେ କେତେ କଲ୍ୟାଣ କରିଥାନ୍ତେ—ଲୀଳାବତୀ ଦେଇ ଭା ଦବ୍ୟା !

ଶ୍ୟାମ ।—କଣ ପୁଅ ନାଇ ହୋଇଥାନ୍ତା !—ତୁଇଟା ବ୍ରାହ୍ମଣକୁଳକଳଙ୍କ ମାମୁଁ ଘର ଦେଖିଲେ ନାହିଁ କି ?—ପାଇନାହିଁ ବୋଲି ଖୁଅଶୋଇ ଲଗେଇଛି ।

ରାମ ।—ଗୋସେଇଁ, ଲୀଳାବତୀ ଦେଉଛି କନ୍ୟା କଲେ ପାପ—ସେ ଯାହା କରୁଛନ୍ତି ସବୁ ଶାସ୍ତ୍ରରେ ଅଛି ।

ଭଣ୍ଡ ।—ଏଡ଼େବଡ଼ ମାଇକିନିଆ ଝିଅଟା—ଝିଏ ହୋଇ ଲାଜ ନାହିଁ, ଦାଣ୍ଡ ଘାଟରେ ବୁଲୁଛି ।

ଶ୍ୟାମ ।—ଆମଘରେ ସବୁ ବୁଲୁଛନ୍ତି ।

ରାମ ।—ଆମ ଘରେତ ପଦାକୁ ବାହାରନ୍ତି ।—ଏବେ ବଡ଼ ବଡ଼ ଘର ମାଇକିନିଆ ସବୁ ପାଠପଢ଼ି ଜାଣିଗଲେଣି ଚଢ଼େଇପରି ପଞ୍ଜୁରିରେ ବନ୍ଦ ହୋଇ ଘରେ ରହିବା ଭଲ ନୁହେଁ—ସବୁ ପଦାକୁ ଗୋଟି ଗୋଟି ହୋଇ ବାହାରି ପଡ଼ୁଛନ୍ତି ।

ଗଦା ।—ସାହେବଙ୍କ ସଙ୍ଗେ କଥା କହୁଛନ୍ତି ?

ଶ୍ୟାମ ।—କଣ ଜାଣିଗଲ !—ସାହେବଙ୍କ ସଙ୍ଗେ ବୁଲୁଛନ୍ତି, କଥା କହୁଛନ୍ତି—ଦାଁ ଶୁଣିବ ?

ଭଣ୍ଡ ।—(କାନରେ ହାତ ଦେଇ) ନାଁ କହନା—ନାଁ କହନା ।—ତୁମେ ଅଜାତି ଶୂଦ୍ରଙ୍କ ସଙ୍ଗେ ଆମର କଥା କହୁ ନାହିଁ । (ସର୍ବ୍ୟମାନଙ୍କୁ ଅନାଇ) ସମସ୍ତଙ୍କ ମତରେ ଏଥିବାହବାହ ସ୍ଥାନକୁ ଯିବନାହିଁ ।

ସର୍ବ୍ୟବର୍ଗ ।—କେହି ଯିବୁଁ ନାହିଁ ।

ଗଦା ।—ଯେ ସେ ସ୍ଥାନକୁ ଯିବେ ତାଙ୍କୁ ଅଜାତି କରିବ ?

ସର୍ବ୍ୟବର୍ଗ ।—ସେ ସମସ୍ତେ ଅଜାତି ହେବେ ।

ଗଦା ।—ଯେ ସେଠାକୁ ଯିବେ ତାଙ୍କସଙ୍ଗେ ଭକ୍ଷ୍ୟଭୋଜନ-ବନ୍ଦ ହେବ ?

ସର୍ବ୍ୟବର୍ଗ ।—କେହି ତାଙ୍କସଙ୍ଗେ ଖାଇବୁଁ ନାହିଁ କି ତାଙ୍କ ମଡ଼ା ଟାଣିବୁ ନାହିଁ ।

ଭଣ୍ଡ ।—ଧର୍ମରକ୍ଷା କରିବା ସମସ୍ତଙ୍କର କର୍ତ୍ତବ୍ୟ । ସଦାଗ୍ରହ ହେଲେ ଧର୍ମ ହେବ, ଯେଉଁଦେଶରେ ଯେଉଁ ଅଧିକ ପରମ୍ପରା ଚଳିଆସିଛି ତାହାକୁ ସଦାଗ୍ରହ

ବୋଲନ୍ତି—ଯସ୍ମିନ୍ ଦେଶେ ଯଦାଚାରଃ ପାରମ୍ପର୍ଯ୍ୟକ୍ରମାଗତଃ । ବର୍ଣ୍ଣାନାଂ ସାନ୍ତରାଳାନାଂ ସ ସଦାଚାର ଉଚ୍ୟତେ ।

[ ଅଚ୍ୟୁତ, ଶରେନ୍ଦ୍ର, ନୀଳକଣ୍ଠ, ଆନନ୍ଦ ପ୍ରଭୃତି ଶିକ୍ଷିତ ଯୁବକବୃନ୍ଦଙ୍କର ପ୍ରବେଶ ।

ଅଚ୍ୟୁ ।—ପଣ୍ଡିତେ ! କେଉଁଠାରୁ ଶ୍ଳୋକଟା ଉଦ୍ଧୃତ କଲେ, ମୂଳରୁ ଭୁଲ୍ ।

ଶର୍ ।—( କ୍ରୁଦ୍ଧ ହୋଇ ) ଆମର ଭୁଲ ଧରିବାକୁ ଆସିଲେ । ଉତ୍କଳରେ ଏଣୁତେଣୁ ଯୋଡ଼ିଏ ତଂ ମଂ କରି ଫଣ୍ଟିକ ପଢ଼ି ଆମର ଜୀବନଯାକ ପଢ଼ାକୁ କହୁଛନ୍ତି ଭୁଲ୍ ! ମନ ଫିଟାଇ ଦେଖ ଜାଣିପାରିବ ।

ଆନ ।—ହିଁ ହିଁ ବିଦ୍ୟାଟା ଜଣାଗଲା । ମନୁ କହିଛନ୍ତି—ସରସ୍ୱତୀଦୃଷଦ୍ୱତ୍ୟୋ-ର୍ଦେବନଦ୍ୟୋର୍ଯଦନ୍ତରଂ । ତଂ ଦେବନିର୍ମିତଂ ଦେଶଂ ବ୍ରହ୍ମାବର୍ତ୍ତଂ ପ୍ରଚକ୍ଷତେ ! ତସ୍ମିନ୍ ଦେଶେ ଯ ଆଚାରଃ ପାରମ୍ପର୍ଯ୍ୟକ୍ରମାଗତଃ । ବର୍ଣ୍ଣାନାଂ ସାନ୍ତରାଳାନାଂ ସ ସଦାଚାର ଉଚ୍ୟତେ ।—ଯେବେ ପାଠ ଥିଲା କେହି ନ ଥାନ୍ତେ ତେବେ ନିରସ୍ତପାଦପେ ଦେଶେ ଏରଣ୍ଡୋ ଽପି ଦ୍ରୁମାୟତେ କରିଥାନ୍ତି । ମିଛଟାରେ ଭୁଲବଚନ ଯୋଡ଼ି ଆପଣା ସ୍ୱାର୍ଥସିଦ୍ଧି କରି ଲୋକଙ୍କୁ କାହିଁକି ଲଣ୍ଡଭଣ୍ଡ କରୁଛ ।

ଶ୍ୟାମ ।—( ସ୍ୱଗତ ) ଦେଖିଲ, ଏମାନଙ୍କ ଜାଗାରେ ଆଉ ବୁଢ଼ା ପଣ୍ଡିତଙ୍କର ଠକାଠକି ଚଳିବ ନାହିଁ ।

ରାମ ।— ସ୍ୱାନ୍ତ ବିଦ୍ୟାର ଶ୍ଳାଘା କୋଲ ।

ଶରେ ।— ଭାଗବତ ସତ୍ୟ—ତହିଁ କାର୍ଯ୍ୟ କିଛି ନାହିଁ,
ଚଲ ଆମ୍ଭମାନେ ଯାହା ବେଦର ସମ୍ମତ ।

ନୀଳ ।— ଶାସ୍ତ୍ରସୂକ୍ତ ଦେଖି ଦେଶ-କାଳ-ପାତ୍ର,
ଚଲ ବାଟ ବେଦମତେ—ତତ୍କାଳ ଯାହା
ପଣ୍ଡିତ ଲୋକଙ୍କ ହିତ ଈଶ୍ୱର-ଆଦେଶ ।

ଅଚ୍ୟୁ ।— ପଢ଼ିନାହିଁ ବେଦ ତେଣୁ ଚଳୁଅଛି ଯାହି
ମାନଛ ତହିଁରେ ଭଲ ମନ୍ଦ ନ ବିଚାରି
ଅନ୍ଧପରି ସଦା—ଯାହା କହୁଁ ଆମ୍ଭେମାନେ
ବେଦର ଆଦେଶ ତାହା ସଦା ପାଳନୀୟ—
ନପାଳିଲେ ତାହା ଭ୍ରାନ୍ତ, ହୋଇବ ମୂର୍ଖତା ।

ଆନ ।— ଛିଃ ଛିଃ, ସ୍ୱାର୍ଥାଧୀନତା ବୁଦ୍ଧିରଚ୍ୟୁତ ଶ୍ରମ
ଏ କାଳ ଅଧିନା ଶ୍ରେଷ୍ଠ ବେଦର ବିଧାନ ।

ନ ଲଙ୍ଘ ତାହାକୁ । ଯେବେ କରଇ ଲଙ୍ଘନ
ଅଟେ ତାହା ପାପ । ପାପୁଁ ଫଳୁଛି ଯାତନା,
ହେଉଛି ସମାଜେ ନେତେ ମହାପାପ ଦେଖ,
ହ୍ରାସଇଛି ଗୋଧନ ଘୋଟୁଛି ଦାରିଦ୍ର୍ୟ ।
ବିଦ୍ୟାଶୂନ୍ୟ ବଳଶୂନ୍ୟ ମହାକାଳରୂପେ
ଗ୍ରାସୁଛି ସମାଜ ବାଲ୍ୟବିବାହୁଁ ଉଦ୍ଭବ,
ମୂର୍ଖଙ୍କର ଜନନି ଯଥା କାଳେ ଯଦୁକୁଳ
ନାଶିଥିଲା, ସେହିରୂପେ ନାଶଯିବ ସର୍ବେ .
ନୈତିକସାହାସ ଧରି ନ ନାଶିଲେ ତାହା ।
ପିଲାଖେଳପରି ବାଲ୍ୟ-ବିବାହ-ଘଟନ
ନ ଶୁଣିଲୁ କିଛି ନାମ ଖେଳିବାକୁ ଯାହା
କରଇ ସକଳେ ତାହା ଶାସ୍ତ୍ରର ବିରୁଦ୍ଧ,
ଅନର୍ଥଜନକ ଅଟେ ଅବୈଧ ନିତାନ୍ତ,
ସମାଜ-ବିପ୍ଳବ-କାରୀ ଅଶୁଭ-ଫଳଦ ।
ସେଇନ ବିବାହ ଶାସ୍ତ୍ରି ବାଲବିଧବାଏ
ହୋଇଲେ ବିବାହ ନଷ୍ଟେ ଯୁକ୍ତିସିଦ୍ଧ ତାହା ।

ବଣ । —(କ୍ରୋଧେ) ଏ ଆଇଲେ ଆମ୍ଭଙ୍କୁ ପାଠ ପଢ଼ାଇବାକୁ ! ରଖିଦଅ ତୁମ୍ଭର ପାଠ ! ଆମେ ବେଦ ପଢ଼ିନାହୁଁ କି ଶୁଣି ନାହୁଁ । ଆମର ଊର୍ଦ୍ଧ୍ୱପୁରୁଷ ମୂର୍ଖ ଥିଲେ, ବ୍ରାହ୍ମଣକୁଳରେ ଆଉ କେହି ବେଦ ପଢ଼ି ନ ଥିଲେ—ଏ ଆସିଛନ୍ତି ବେଦ ପଢ଼ାଇବାକୁ ! ଆମେ ବୈଷ୍ଣବନିଷ୍ଠ ଥାଉଁ ତା ପୁଅକୁ ପ୍ରାୟଶ୍ଚିତ୍ତ କରାଇ-ଥାନ୍ତୁଁ—ତୁମ୍ଭେମାନେ ସବୁ ଗଲାଇକେଇ ଲଣ୍ଡଭଣ୍ଡ କରିଦେଲ ।

ଶୀଳ । —ସଦା ବେଦେହବ ଗରୁଡ଼ ଚୂଟି କାଟିବାକୁ ତାକୁ ସବୁ ପ୍ରାୟଶ୍ଚିତ୍ତ କରାଇବାକୁ ଯାଉଥିଲ ?

ବଣ । —ତୁମ୍ଭେମାନେ କଣ କିଛି କରିବାକୁ ଦେବ !— ତାକୁ ମନା କରିଦେଲ ଆଉ ତାଙ୍କ ଗୋସାଇଁଙ୍କି କହିଦେଲ—ସେ ଆଉ ପ୍ରାୟଶ୍ଚିତ୍ତ କରୁଛି ?

ଶୀଳ । —ତୁମ୍ଭର ଯେ ଚୂଟିଟା କାଟିଦେଲା ସେଦିନ—ପ୍ରାୟଶ୍ଚିତ୍ତ କଲ ?

ବଣ । —ଆରେ ଆମେ ବ୍ରାହ୍ମଣ—ଦଶଥର ଗାୟତ୍ରୀ ଜପିଦେଲେ ସବୁ ପାର ।

ଶୀଳ । —ମନୁଷ୍ୟ ମାରିପକାଇଲେ ବି ସେଥିରେ କଟିଯିବ ।

ବଣ । —ଯିବନାହିଁ ?—ଗାୟତ୍ରୀର ବଳ କି କମ୍ ?

ଶୀଳ । —ସେଥିପାଇଁ ଯେବେ ମିଥ୍ୟାକଥା, କପଟାଚାର, ଅଖାଦ୍ୟ ଖାଦ୍ୟ କରିଯାଉଛ

ଯେ ଗାୟତ୍ରୀ ଜପିଦେଲେ ଦୋଷ ଯିବ । ହାୟ ହାୟ ! କ ଉଦ୍ଦେଶ୍ୟରେ ଗାୟତ୍ରୀ ହୋଇଥିଲା ଆଉ କରୂପେ ପାପଖଣ୍ଡନସହାୟକ ତାକୁ ବ୍ୟବହାର କରି ପୁଣ୍ୟକାର୍ଯ୍ୟ ବଦଳରେ ପାପ କରିଆଉ ବ୍ରାହ୍ମଣେ ଛାତିଫୁଲାଇ ବୁଲୁଛନ୍ତି !- ଗାୟତ୍ରୀର ଅର୍ଥ ଜାଣ ?

ରାମ ।—( ଶ୍ୟାମକୁ ) ଦେଖିଲ, କେମନ୍ତ ଧରୁଛନ୍ତି !

ଶ୍ୟାମ ।—( ରାମକୁ ) ସେ କେବେ ପଡ଼ିଛନ୍ତି—ବାପ ଆଗରେ ବଳେଇ !

ବଶ. ।—ଅର୍ଥ ଜାଣି ନ ପାରିଲେ କଣ ମନ୍ତ୍ରଟା ଗଲା ?

ନୀଳ ।—ଅର୍ଥ ନ ଜାଣି ଖାଲି ମନ୍ତ୍ରରେ କି କାର୍ଯ୍ୟ ହୁଏ ? ପଣ୍ଡିତପଣ ଆଉ ଉହଙ୍ଗ-ତାହିଁ ! ଅର୍ଥ ନ ଜାଣିଲାରୁ ଯେତେ ଅନର୍ଥ ହୁଆଇ ବସିଛ । ମିଶ୍ରଦେବ-ଙ୍କୁତ ପ୍ରାୟଶ୍ଚିତ୍ତ କରାଇଥାନ୍ତି—ଅଭ୍ୟର୍ଥନା ସଭାକୁ ଗଲ କପରି ?

ବଶ. ।—ସଭାକୁ ଗଲେ କି ଦୋଷ ? ସେ ହାକିମଟାଏ !

ନୀଳ ।—ହଁ—ହାକିମବୋଲି ଭରହର ଗଲ, ଆଉ ଲୋକ ହୋଇଥିଲେ କାମୁଡ଼ି ଗୋଡ଼ାଇ ଥାନ୍ତ ।

ବଶ. ।—ଆମ୍ଭେ କଣ ତାଙ୍କଘରେ ଖାଉଛୁଁ ?

ନୀଳ ।—ତୁମ୍ଭେ ନ ଖାଇଲେ ତୁମ୍ଭର ପୁଅର ଖାଉଛି ? କେବଳ ତୁମ୍ଭଘରେ ଏକା ଅଛୁ, ତା ବାହାର କରି ଦେଉଛ ?

ଶ୍ୟାମ ।—ଏ କାଳକୁ ଆଉ ପୂର୍ବକଥା ରହିପାରିବ ନାହିଁ ।

ରାମ ।—ଦେଖିଲ, କେମନ୍ତ ସଜରେ ବାଗେଇ ବାଗେଇ ଆଣୁଛନ୍ତି ।

ବଶ. ।—ଆଉ ପୁଅଟାକୁ କଣ ପୋଷାଡ଼ିଦେବ ? ତୁମ୍ଭେମାନେ ପଞ୍ଚାଏ ଟୋକା ମିଳି ସବୁ ଖଣ୍ଡ କରିଦେଉଛ । ଯେଉଁକଥା ନ କରିବାର କରୁଯାଉଛି, କହଲା-ବେଳକୁ ବେଦର ଦୋହାଇ ଦେଉଛ ।—( ଅତିକ୍ରୋଧେ ) ତୁମ୍ଭେମାନେ ଏଡ଼େ ବେହୁଆ !

ନୀଳ ।—ସମ୍ମାନହୋଇ କଥା କହ—ଆଉ ଟିକିଏ ଆଗକୁ ବଢ଼ିଲେ ତୁମ୍ଭର ଉପରେ ପଡ଼ିବ ।

ବଶ. ।—( ରାଗ ହୋଇ ) କଣ ଗାଳିଦେବ କା ମାରିବ ?

ନୀଳ ।—ତୁଚ୍ଛୁଚ୍ଛ କଏ ?—ଅଚ୍ଛା, ସଭାରେ କଣ ଧାର୍ଯ୍ୟ ହେଲ ?

ବଶ. ।—

ଧାର୍ଯ୍ୟହେଲୁ ଏକମତେ ବିଧବା ବିବାହ
ଅଟଇ ନିଷିଦ୍ଧ—ଯେତୁ ଯୋଗ ଦେବ ତହିଁ
ହେବ ସେ ପତିତ, ହେବ ଅଜାତିରେ ଗଣ୍ୟ,
ତାହାସଙ୍ଗେ ଭକ୍ଷ୍ୟଭୋଜ ନ କରିବେ କେହି;
ହେବୁଁ ନାହିଁ ଉପସ୍ଥିତ ବିବାହ-ସଭାରେ ।

ଶୀଳ ।— ବୋଧନାହିଁ ସୁନ୍ଦର,—କେବେହେଁ ଏ କଥା
ରକ୍ଷି ନ ପାରିବ,—ଦେଖ ଯେତେକ ଯୁବକ
ଗ୍ରାମେ ଗ୍ରାମେ ଥିଲେ ସର୍ବେ ପଢ଼ୁଛନ୍ତି ପାଠ,
ସମସ୍ତେ ମିଳିତ ବେଦ-ମାନ-ରକ୍ଷା ପାଇଁ ।
ପ୍ରସ୍ତାବ ତୁମ୍ଭର ହେଲେ କାର୍ଯ୍ୟେ ପରିଣତ
ଆପଣେ ଏ କାଳେ ହେବ ଜାତିରୁ ପତିତ ।

ଜଣେ ବୃଦ୍ଧ ।—( କମ୍ପିତସ୍ୱରରେ ) ସତ, ସବୁଗାଁର ଟୋକାମାନେ ମିଶି ଯାଉଛନ୍ତି ।

ଶ୍ୟାମ ।— ସମସ୍ତେ ତ ଇସ୍କୁଲରେ ପଢ଼ୁଛନ୍ତି—ଏକାସଙ୍ଗେ ବସା ଉଠା, ଖିଆପିଆ— ସମସ୍ତଙ୍କର ଏକାକଥା । ସେ ସମସ୍ତେ ମିଳିଗଲେ ଆପଣମାନେ କଣ କରିବେ ?—ଦେଖିନେବେକ ରକ୍ଷାମାନ ପାରିବେନାହିଁ ।

ଅନ୍ୟ ବୃଦ୍ଧ ।—( ଈଷତ୍ କମ୍ପିତସ୍ୱରରେ ) ଏ ଠିକ୍ କହୁଛି !—କେବେତ ଆମେ-ମାନେ ଟୋକାଙ୍କ ଓଲଟାକାମ କଲେ ଟୋକାଏ ଘରେ ରଖି-ଦେବେ ନାହିଁ ।

ରାମ ।— ଆଉ ବୁଢ଼ାଙ୍କ କାଳ ନାହିଁ । ତାଙ୍କ କଥା ନ ମାନିଲେ ଶେଷକୁ ଗ୍ରାମ ଗଣ୍ଡିଏ ବି ମିଳିବ ନାହିଁ ।

ଶୀଳ ।— ଶାସ୍ତ୍ର ଅଛି ନୃପେଣୈବ ଶବ୍ଦମାପର୍ବେ ବଧ୍ୟନ୍ତେ ,ମହଦଣ୍ଡନଃ । ଆମ୍ଭେମାନେ ଯେବେ ଶିକ୍ଷିତ ସମାଜର ସଭ୍ୟ ଅଟୁଁ, ଯେବେ ପଲ୍ଲୀର ସ୍କୁଲରେ ପାଠ ପଢ଼ୁଛନ୍ତି, ସମସ୍ତେ ଏକମତରେ ପ୍ରତିଜ୍ଞାବଦ୍ଧ ହୋଇଛୁଁ କେହି ବାଲ୍ୟ-ବିବାହ କରିବେ ନାହିଁ, ସମସ୍ତେ ବ୍ରହ୍ମଚର୍ଯ୍ୟାଶ୍ରମ ଉଚିତ ବର୍ଷ ପର୍ଯ୍ୟନ୍ତ ପାଳନ କରିବେ, ଷୋଳ ବର୍ଷର ଉଣା କନ୍ୟାକୁ ବିବାହ ହେବେ ନାହିଁ, ଆଉ ଯେତେ ବାଲବିଧବା ଅଛନ୍ତି ସମସ୍ତଙ୍କୁ ବିବାହ କରି-ଦେବେ । ସମାଜରେ ନାନାପ୍ରକାର କଳଙ୍କ ଦେଖାଯାଉଛି । କେତେ ବାଲବିଧବା ପୁଣି ଅନ୍ୟ ଧର୍ମାବଲମ୍ବୀଙ୍କ ପ୍ରଲୋଭନରେ ପଡ଼ି ଜାତି ଧର୍ମ ଛାଡ଼ି ହିନ୍ଦୁସମାଜକୁ କଳଙ୍କ ଲଗାଉଛନ୍ତି । ଆମ୍ଭେ-ମାନେ ଅପେକ୍ଷା କରୁଥିଲୁ ଯେ ବୃଦ୍ଧମାନଙ୍କର ଜ୍ଞାନ ହେଲେ କିଛି ଫଳ ହେବ, ମାତ୍ର ଫଳହେବା ଦେଖିନ ଥାଉ ଆପଣମାନେ ଅନେକ ସ୍କୁଲ୍-କଲେଜର ଛାତ୍ରଙ୍କୁ ବିବାହ ଦେଇ ତାଙ୍କୁ ମାଟିକରି ଦେଉଛନ୍ତି । ବର୍ତ୍ତମାନ ଆମ୍ଭମାନଙ୍କର ଏକତା ଯୋଗେ ଯେଉଁ ବଳ ହୋଇଛି, ତହିଁକି ଜଗଦୀ-ଶର ସାକ୍ଷୀ—ତାଙ୍କର କରୁଣାରେ ତାଙ୍କ ବେଦାଜ୍ଞା ପାଳନ କରି ଆମ୍ଭେ-ମାନେ ବେଦୋଦ୍ଧାର, ଦେଶୋଦ୍ଧାର ଓ ଧର୍ମୋଦ୍ଧାର କରି ତାଙ୍କର ମହିମା ଘୋଷିବୁଁ ।

ଆଦ, ଓ ଅନ୍ୟ ଶିଷ୍ୟବୃନ୍ଦ ।— ( ଗୀତ-ବାଦନ । )

ସଦା ।— ( ଆଶ୍ଚର୍ଯ୍ୟାନ୍ୱିତ ହୋଇ ) ସବୁ ଯୋଦ୍ଧାଏ ଏକାଠି ହୋଇଛନ୍ତି !

ଗଦା ।— ସମସ୍ତେ ମିଶି ସାହେବ ଓ ଲାଲାବଗଙ୍କଠାରେ ବଧ । ସାହେବ ଦଳର ଯାଇ ଯେମନ୍ତ ବଦ୍ନାମ୍ ହୋଇଛନ୍ତି ଲୀଳା ପରେ ଆଉ ତେମନ୍ତ ବଦ୍ୟା ଅଳିଛନ୍ତି—ସାହେବମାନଙ୍କ ସଙ୍ଗେ ଲାଲାବଗ ଫଡ୍ ଫାଡ୍ ଇଂରାଜୀ କହିବା ମୁଁ କାନରେ ଶୁଣିଛି ପରା !

ବଣ ।— ଆଉ କେବେ ବଳ ନାହିଁ—ଚାଲ ସେ ଯାତ୍ରା କରିବାର କରି ଯାଆନ୍ତୁ— ଆମ ଧର୍ମ ଆମ ଦେହରେ ଥାଉ ।—କେବେ ଦେଶ ଦେଖା ନ ଯାଇ ଜାଣିଥିଲେ ସଂସାରେ ।

[ ବଣମ୍ଭର ପ୍ରଭୃତି ପଣ୍ଡିତ ଓ ବୃଦ୍ଧମାନଙ୍କର ପ୍ରସ୍ଥାନ ।

ନୀଳ ।— ( ହସରେ ଗଡ଼ିଯାଇ ) ଦେଖିଲ, ଏ ବୁଢ଼ାସୁଡ଼ାକ ଆମ ଆଗରେ ଠିଆ ହୋଇ ସତ୍କାର୍ଯ୍ୟରେ ବାଧା ଦେବେ !

ରାମ ।— ଗପ୍ କରୁଛ ! ଏ ପଣ୍ଡିତ ଗୁଡ଼ାକ ଯେ ଅପାଠ ବାହାର କରି ଚଳି ଖାଉଥିଲେ କହିବାର ନୁହେ ।—ତୁମ୍ଭେମାନେ ଅନ୍ଧଲୋକଙ୍କୁ ଚକ୍ଷୁ ଦେଲ—ଆମ ପରିଙ୍କୁ ବିଦ୍ୟା ଦେଇ ଭଲ ବାଟେ କରାଉଛ ।

ଶ୍ୟାମ ।— ଯୁଗେ ଯୁଗେ ତୁମ୍ଭମାନଙ୍କ କୀର୍ତ୍ତି ରହିଥିବ ।—ପାଠ୍ୟଯାନ ମିଳିଲେ ତାହାର ଏମନ୍ତ ଯୋଗ୍ୟତା ଅଛି ଯେ ତାଙ୍କୁ ଖେଦିବେ ? ଏମନ୍ତ ତେଜ—ଏମନ୍ତ ପ୍ରତିଜ୍ଞା ପାଠ୍ୟଙ୍କ ଭିତରେ ଆମେ କେବେ ଦେଖି ନ ଥିଲୁଁ । ଏବେ ବିଦ୍ୟାର ଗୌରବ ଦେଖାଗଲା ।—ଅହା, ଲାଲାବଗଙ୍କ ଯାତ୍ରା କସ୍ କରାଇ ଦେଉଛି—ସାରଣ୍ଡି ଗାଁ ତାଙ୍କ ସର୍ବାଙ୍ଗେ ଝୁରୁ-ଥିଲେ । ଭଗବାନ୍ ତୁମ୍ଭମାନଙ୍କୁ ଦୀର୍ଘାୟୁ କରନ୍ତୁ ।

ରାମ ।— ତାର ଦେବତ୍ତ ମଳିବେଲେ ଗାଁ ଯାକ କେହି ଖାଉ ନାହାନ୍ତି ! ଅହା ! ରଣ୍ଡିର ଗୋଟିଏ ଝିଅ ! ବିଧାତା ତାଙ୍କ କପାଳ ଖୋଲି ଦେଲେ ।— ସ୍ୱାମୀ ନ ଆସନ୍ତି ଏତକ ନ ହୁଏ ।

ନୀଳ ।— ଯାହା କହିଲ—ସବୁ ସ୍ୱାମୀଙ୍କ ଯୋଗେ । ବେଦର ସ୍ୱାମୀ ପରମେଶ୍ୱର ବେଦର ମହିମା—ବେଦର ମର୍ଯ୍ୟାଦା—ରକ୍ଷା କରିବା ପାଇଁ ସ୍ୱାମୀଙ୍କି ପଠାଇ ଥିଲେ । ସମସ୍ତେ କହ ସ୍ୱାମୀଙ୍କର ଜୟ ।

ସମସ୍ତେ ।—( ଉଚ୍ଚୈଃସ୍ୱରେ ) ଜୟ, ସ୍ୱାମୀଙ୍କର ଜୟ ।

ଆଦ ।— ଚାଲ ଏବେ ସମସ୍ତେ ଯିବା । କୁରୁକ୍ଷେତ୍ର ଯୁଦ୍ଧରେ ଜୟଲାଭ ହେଲା— ଏବେ ସୁଖରେ ଭଜନ୍‌ପୂଜାର ଆୟୋଜନ କରିବା । କୈବର୍ତ୍ତ ପାଣ୍ଡବ

ଅବଲମ୍ବନ କରି ଅଟଳ ପ୍ରତିଜ୍ଞାରେ ଆବଦ୍ଧ ନ ହେଲେ ସମାଜର କୁସଂସ୍କାର ଉତ୍ପାଟିତ ହେବା ସମ୍ଭବ ନୁହେ । ଶିକ୍ଷା କରି ଯେବେ ଅନାୟାସ କାର୍ଯ୍ୟରେ ମୁହଁ ଓଡ଼ାରିବା ସଙ୍ଗେ ସତ୍‌ସାହସ ନ ଜନ୍ମିଲା ତେବେନ୍ତ ଶିକ୍ଷାରୁ ଫଳ୍ ! ଚାଲ ଏବେ ।

[ ସମସ୍ତଙ୍କର ପ୍ରସ୍ଥାନ ।

### ପଟପରିବର୍ତ୍ତନ ।

—※—

ତୃତୀୟ ଦୃଶ୍ୟ । ସଭା-ମଣ୍ଡପ ।

[ ବୈଷ୍ଣବ, ଗଜେନ୍ଦ୍ର, ଅକ୍ଷୟ, ଗୋଲକଚଣ୍ଡ, ଆନନ୍ଦ ଓ ବିଦ୍ୟାଳୟର ବାଳକ ବାଳିକାବୃନ୍ଦ ସମାସୀନ । ]

ଗଜେ ।—ପଣ୍ଡିତମାନେ ଯେ ଦୁଷ୍ଟ ଫଳାଇଛନ୍ତି ଆଉ ତାଙ୍କର ଦେଖାନାହିଁ । ଜନାସ୍ଥରୂପଙ୍କୁ ବେଷ୍ଟିଥିଲ, ତାଡନାରୁ ମୁହଁ ମୋଡ଼ିଦେଇ ଚାଲିଗଲେ ।

ଅକ୍ଷ ।—ଆଉ ତାଙ୍କର ମୁହଁ ଅଛି ଯେ ଆସିବେ—ତାଙ୍କର ସମ୍ପୂର୍ଣ୍ଣ ପରାଜୟ ହୋଇଛି । ଏହାଠାରୁ ବଳି ବଳ ନାହିଁ ।

ଗୋଲ ।—ପରାଜୟ କ ପରାଜୟ—ଲଜ୍ଜା ଆଉ ଅପମାନ ତାଙ୍କୁ ଖାଇ ଦେଉଛି !— ଯେ ଦଶ ଜାଣିଥିଲେ ସାନଠାରୁ ବଡ଼ପର୍ଯ୍ୟନ୍ତ ସମସ୍ତେ ଏକ ହୋଇଯିବେ !

ଆନ ।—ଏକ ହେଲୁଁ ବୋଲି ସେମାନେ ସମସ୍ତେ ମିଳି ବୈଷ୍ଣବଙ୍କୁ ଅନାଦର କରିଥିଲେ ଏବେ ଆପେ ଆପେ ଅନାଦର ହୋଇଗଲେ ।

ବୈଷ୍ଣ ।—( ସଗଦ୍ଗଦେ ) ମୋର କପାଳ ଭଲ ଯେ ତୁମ୍ଭେମାନେ ମୋର ସହାୟ ହେଲ । ମୋତେ ଅନାଦର କଲାବେଳେ ଯେ କେତେଜଣ ଶିକ୍ଷିତଲୋକେ ଥିଲେ ସମସ୍ତେ ମୁହଁ ଲୁଚାଇ ରହିଲେ—ନୈତିକ ସାହସ ହୋଇ ତାଙ୍କର ନ ଥିଲା । ମୁଁ ତ କିଛି ମନ୍ଦ କାର୍ଯ୍ୟ କରି ନ ଥିଲି—ପୁଅ ଝିଅଙ୍କ ଲେଖାପଢ଼ି କରିବା ଦେଖି ମନ ଉତ୍ସୁକ ହେବାରୁ କନ୍ୟାକୁ ପଠାଇଦେଇ ସର୍ବସ୍ୱାନ୍ତ ହୋଇଛି । ତୁମ୍ଭମାନଙ୍କୁ ମୋର ଶତଧନ୍ୟବାଦ ଯେ ପଣ୍ଡିତମାନେ ଯେତେ ଧମକ ଦେଲେ ସୁଦ୍ଧା ସୁବାଟ ଅବା ପ୍ରତିଜ୍ଞା-ପାଶରୁ ତିଳେ ଅନ୍ତର ହୋଇ ନାହଁ ।

ଆନ ।—ଆମ୍ଭେମାନେ ଶିକ୍ଷା ଓ ଉନ୍ନତିର ପକ୍ଷପାତୀ । ଯେତେବେଳେ ଆପଣ ଭଲ କାର୍ଯ୍ୟ କରୁଛନ୍ତି ତେତେବେଳେ ଆମ୍ଭେମାନେ ଆପଣଙ୍କୁ ଯଥାସାଧ୍ୟ ସାହାଯ୍ୟ ନ କଲେ କାପୁରୁଷ ମଧ୍ୟରେ ଗଣ୍ୟ ହେବୁଁ ।

ବୈଷ୍ଣ ।—ତା ସତ, ମାତ୍ର କେତେ ଲୋକ ତାହା ବୁଝନ୍ତି ? ଦେଖ, କେତେକ ପଣ୍ଡିତ ସ୍ଥାନେ ସ୍ଥାନେ ସଭାସମିତି ଗଢ଼ିଛନ୍ତି—ଧୂମଧାମରେ ବାର୍ଷିକ ସଭା, ବିଶେଷ ସଭାମାନ କରୁଛନ୍ତି । ଆଜି ବାଲ୍ୟବିବାହ ଉଠିବ, କାଲି ସ୍ତ୍ରୀଶିକ୍ଷା ଏହିପରି କେତେକ ଉନ୍ନତିକର ବିଷୟରେ ପ୍ରସ୍ତାବ ଧାର୍ଯ୍ୟ କରି ପକାଉଛନ୍ତି । ମାତ୍ର ଗୋଦର କୋଡ଼ିଲ ଯେତେ ମାଡ଼ିଲେ କେତେ ! ପ୍ରସ୍ତାବଗୁଡ଼ାକ ଦାଣ୍ଡରୁ ଦେଖିବାକୁ ଭଲ; ସେଥିଯୋଗୁଁ ସମ୍ବାଦପତ୍ରମାନଙ୍କରେ ସଭାର ଧନ୍ୟ ଧନ୍ୟ ପଡ଼ ପଡ଼ିଯାଏ—ତାକୁ ଦେଖାଇ ପଦାରୁ ପଣ୍ଡିତେ ତ୍ରାନ୍ଦା ଝୀଙ୍କି ଅଣନ୍ତି । ଡେଙ୍ଗେ ଆପଣ ଝିଅକୁ ସ୍କୁଲକୁ ପଠାଇବ ବେଳେ କହନ୍ତି ଉଠ ଉଠ, ଏହିକ୍ଷଣି ଚଢ଼ାଇ ପିଲା, ଦୁଇବର୍ଷ ଯାଉ ପାଠ ପଢ଼ିବ; ଆଉ ଦୁଇବର୍ଷ ନ ପୂରୁଣୁ ଝିଅଟାକୁ ନଅବର୍ଷ ହୋଇଗଲେ ବିବାହ ଦେଇପକାନ୍ତି ।—ପଚାରିଲେ କହନ୍ତି ବୁଝିନାହଁ କି, ପାଞ୍ଚଟିଏ ମିଳିଗଲା ପତ୍ର । ମୁଁ ସିନା ପିଲାଝିଅ ବାହା କରିଦେଲି ଆଉ ସବୁମାନେ ଅଛନ୍ତି । ବାହାଘରଟା ସେତିକିଠୁ ହୋଇଗଲା, ଘରେ ତ ଝିଅ ରହିଲା—କି ହୋ ସ୍କୁଲକୁ ପଠାଇବ ପଚାରିଲାରୁ ଉତ୍ତର ଦେଲେ ଆଉ କପର ବାହାହେଲା ଝିଅ ସ୍କୁଲକୁ ଯିବ, କେତେଲୋକେ କେତେ କଥା କହିବେ । ଆଚ୍ଛା ତାହା ଯେମନ୍ତ ହେଲା, ସରକାର ତ ଜନାନାଶିକ୍ଷୟିତ୍ରୀ କରି ଦେଇଛନ୍ତି—ସେ ଆସି ଘରେ ଝିଅକୁ ପଢ଼ାଇବ । ଏହା ପଚାରିଲାରୁ କହିଲେ ହଁ ସେ ଆସନ୍ତା ଯେ ଆପଣା ଜାତିର—ଆପଣା ଦେଶର—ହେଲେ ସିନା ହେବ । ଏହିପରି ସବୁରି ଓଜର ! ଏପରି ଭଣ୍ଡଲୋକଙ୍କୁ ଯେବେ ସମାଜସଂସ୍କାର ହେବ ତା ସମାଜର ଉନ୍ନତି ହେବ ? ଚରିତ୍ରବଳ ନାହିଁ, ମନର ସରଳତା ବା ଆବେଗ ନାହିଁ, ସତ୍କାର୍ଯ୍ୟ କରିବାକୁ ସାହସ ଓ ଉଦ୍ୟମ ନାହିଁ । ଏମନ ଚରିତ୍ରସମ୍ପନ୍ନ ଲୋକ ଯେବେ କିଛି କାର୍ଯ୍ୟ ନାହିଁ । ଯେଉଁମାନେ ପ୍ରତିଦଣ୍ଡ ଗାୟତ୍ରୀର ଅମର୍ଯ୍ୟାଦା କରୁଛନ୍ତି ସେମାନେ କେଉଁ ଲଜ୍ଜାରେ ଗାୟତ୍ରୀ ଉଚ୍ଚାରଣ କରନ୍ତି ମୁଁ ବୁଝି ନ ପାରେ—ତାଙ୍କ ଜାତିର ପଇତା ଅଜାଗଳସ୍ତନ ପରି ନିରର୍ଥକ ।

ନୀଳ ।— ଅନେକେ ଗାୟତ୍ରୀ ଭୁଲିଲେଣି—ସେମାନେ ଗାୟତ୍ରୀ ନ ଛାଡ଼ନ୍ତୁ ଗାୟତ୍ରୀ ତାଙ୍କୁ ଛାଡ଼ିଯାଇଛି ।

[ ବରବେଶଧାରୀ ସାଧବର ହାତ ଧରି ବୃନ୍ଦାବନର ପ୍ରବେଶ ।

ବୃନ୍ଦା ।—( ସାଧବପ୍ରତି ) ଏହି ସ୍ଥାନରେ ବସ ।

ସାଧୁ ।—( ମଞ୍ଚୋପରି ଉପବେଶନ । )

ବ୍ରହ୍ମା ।— ସଭାସଦ୍‌ବର୍ଗ ! ଆଜ କରୁଣାମୟ ଜଗତ୍‌ପିତା ପରମେଶ୍ୱରଙ୍କ କଲ୍ୟାଣରୁ ଏଦେଶରେ ଅପାର କରୁଣାବୃଷ୍ଟି ହୋଉଛି । ମଙ୍ଗଳମୟ ବିଧାତାଙ୍କ କରୁଣା ବିନା ମନୁଷ୍ୟ କିଛିମାତ୍ର କରିବାକୁ ସକ୍ଷମ ନ ହୁଏ । ପୂର୍ବକାଳର ମନୁଷ୍ୟର ଅଧିକାରରେ, ମାତ୍ର ଅଖିଳ ବ୍ରହ୍ମାଣ୍ଡର ବ୍ୟବସ୍ଥାଦ୍ୱାରା ସମସ୍ତ ବ୍ୟବସ୍ଥା ନିରପେକ୍ଷଭାବରେ ସୂକ୍ଷ୍ମାନୁସୂକ୍ଷ୍ମ ନ୍ୟାୟବର୍ତ୍ତିରେ ଯେପରି କରୁଛନ୍ତି ସେପରି ହେଉଛି । ତାଙ୍କର ମହିମା ଅନନ୍ତ, ତାଙ୍କର ଜ୍ଞାନ ଅନନ୍ତ, ତାଙ୍କର ଶକ୍ତି ଅନନ୍ତ, ତାଙ୍କର ମଙ୍ଗଳମୟ ଇଚ୍ଛାର ମଧ୍ୟ ଅନ୍ତ-ନାହିଁ । ଉତ୍କଳରେ ଶିକ୍ଷିତଲୋକେ ସମସ୍ତେ ଆପଣାକୁ ଆର୍ଯ୍ୟବୋଲି ମାନୁଛନ୍ତି । ସେମାନେ ବେଦାନୁରୂପ ଆର୍ଯ୍ୟୋଚିତ କର୍ମ କଲେ ଅଳ୍ପେ ଅଳ୍ପେ ଆର୍ଯ୍ୟସମାଜ ଗଠିତ ହୋଇଯିବ । ସତ୍ୟଗ୍ରହଣବ୍ରତ ସମସ୍ତ ଶିକ୍ଷିତ ଲୋକେ ଧାରଣ କରୁଛନ୍ତି । ବିଦ୍ୟାଳୟମାନଙ୍କରେ ସତ୍ୟଗ୍ରହଣର ପୁରସ୍କାର ଦିଆଯାଉ ଗ୍ରନ୍ଥମାନଙ୍କ ସତ୍ୟପଥରେ ଚାଲିବା ସକାଶେ ଉତ୍ସାହିତ କରାଯାଉଛି; ସ୍ତ୍ରୀଶିକ୍ଷା ପ୍ରତି ସମସ୍ତଙ୍କର ମନ ଟଳୁଛି ଓ ସମସ୍ତେ ସ୍ତ୍ରୀମାନଙ୍କ ପ୍ରତି ସମ୍ମାନ ଦେଖାଉଛନ୍ତି; ବାଲ୍ୟବିବାହ ରହିତ ହେବାର ସୂତ୍ରପାତ ହୋଇଗଲାଣି, ଆଉ ସବୋପରି କନ୍ୟାଇଷୋଳ ପର ବାଲ୍ୟ-ବିବାହ ବ୍ୟର୍ଥକର ଏ ସଭା ପ୍ରକୃତ ଆର୍ଯ୍ୟସମ୍ମତ ବିବାହ ସକାଶେ ଆଦୃତ ହୋଇଛି । ଆର୍ଯ୍ୟ ଶୋଣିତ ସମସ୍ତଙ୍କ ଧମଣୀରେ ପ୍ରବାହିତ ହେଉଛି ଆଉ ଶିକ୍ଷା ସକଳ ଜାତିଙ୍କି ଏକତ୍ରିତ କରି ସଙ୍ଗେ ସଙ୍ଗେ ଏକସ ଯୋଜନ ଚଳାଉ ନେଉଛି । ଶିକ୍ଷାରୂପ ତୀର୍ଥ ସମସ୍ତ ମଳିନତା ଦୂର କରି ମନୁଷ୍ୟରୂପ ସୁବର୍ଣ୍ଣକୁ ନିଆଁରେ ପୋଡ଼ି ଶୁଦ୍ଧକଳା ପ୍ରାପ୍ତ ସଦୃଶ କରେ । ଓଁ ପାବକା ନଃ ସରସ୍ୱତୀ ବାଜେଭିର୍ବାଜିନୀବତୀ । ଯଜ୍ଞଂ ବଷ୍ଟୁ ଧିୟାବସୁଃ । ବିଦ୍ୟା ନାନାପ୍ରକାର କର୍ମରେ ଲୋକଙ୍କୁ ଲଗାଏ ଏବଂ ବିଦ୍ୟାହିଁ ପ୍ରକୃତ ସଦସ୍ତ-ନାସ୍ତି । ଓଁ ମହୋ ଅର୍ଣ୍ଣଃ ସରସ୍ୱତୀ ପ୍ରଚେତୟତି କେତୁନା । ଧିୟୋ ବିଶ୍ୱା ବିରାଜତି । ସେହି ବିଦ୍ୟା ନାନାପ୍ରକାର ଜ୍ଞାନର ଉଦ୍ଭବ କରି ସକଳ ଦେଶରେ କୀର୍ତ୍ତି ପ୍ରସ୍ତର କରେ ଏବଂ ମହାର୍ଣ୍ଣବ ତରଙ୍ଗକୁ ଆଣିଦେଲା ପରି ବିଦ୍ୟାସମୁଦ୍ର ନାନାପ୍ରକାରରେ ଉଦ୍ଭବ ବିଧାନ କରେ । ଏଣୁ ବିଦ୍ୟାଠାରୁ ଶ୍ରେଷ୍ଠ ପଦାର୍ଥ ନାହିଁ ! ବିଦ୍ୟାର ଆଦର ବଢ଼ାଇ ପୁତ୍ରକନ୍ୟାଙ୍କ ବ୍ରହ୍ମଚର୍ଯ୍ୟ ନିୟମରୂପେ ପ୍ରତିପାଳନ କଲେ ବାଲ୍ୟବିବାହ ଅଳ୍ପେ ଅଳ୍ପେ ରହିତ ହୋଇ ଆର୍ଯ୍ୟନିୟମ ଓ ଚରିତ୍ରଗଠନ ସଙ୍ଗେ ଦେଶର ମହିମା ପ୍ରତୀୟମାନ

ହେବ । ପଶ୍ଚିମରୁ ଯେଉଁ ବେଦଧ୍ୱନିର ତରଙ୍ଗ ଉଠିଛି ତାହା ଯେତେବେଳେ ହିମାଳୟଠାରୁ କୁମାରିକା ଓ ହିନ୍ଦୁକୁଶଠାରୁ ଐରାବତୀର ଅପରପାର୍ଶ୍ୱ ପର୍ଯ୍ୟନ୍ତ ବିସ୍ତୃତ ହେବ ସେତେବେଳେ ସମସ୍ତ ଭାରତ ପୁନର୍ବାର ଆର୍ଯ୍ୟଭୂମିର ଗୌରବ ବିସ୍ତାର କରି ଧନ୍ୟ ହେବ । ଈଶ୍ୱର କରନ୍ତୁ ସେ ଦିନ ଶୀଘ୍ର ହେଉ ଏବଂ ସମସ୍ତେ ଆପଣାକୁ ଏକ ଆର୍ଯ୍ୟସନ୍ତାନ ବୋଲି ଭରଷ-ବଳରେ ଜଗତ୍ ସ୍ତମ୍ଭିତ କରନ୍ତୁ । ଏକ ଈଶ୍ୱର ସତ୍ୟ, ଏକ ଈଶ୍ୱର ଆମ୍ଭମାନଙ୍କର ପିତା ଏବଂ ଏକ ଈଶ୍ୱର ଆମ୍ଭମାନଙ୍କର ପରମାରାଧ୍ୟ । ଓଁ ଶାନ୍ତିଃ ! ଶାନ୍ତିଃ ! ଶାନ୍ତିଃ !

ସଭ୍ୟବର୍ଗ ।—( ଆନନ୍ଦରେ କରତାଳି ପ୍ରଦାନ । )

ବ୍ରହ୍ମା ।—ବର୍ତ୍ତମାନ ଆପଣମାନଙ୍କର ଆଦେଶ ହେଲେ କନ୍ୟାଙ୍କୁ ଆଣି ବରଣକରାଇ ନେବ ।

ସଭ୍ୟବର୍ଗ ।—ଆଣନ୍ତୁ—ଶୁଭସ୍ୟ ଶୀଘ୍ରଂ ।

ନେପଥ୍ୟେ ।—( ଶଙ୍ଖ ଧ୍ୱନି ଓ ହୁଳହୁଳୀ ଶବ୍ଦ । )

ବ୍ରହ୍ମା ।—ଆପଣମାନେ ଟିକିଏ ଅପେକ୍ଷା କରନ୍ତୁ । ( ପ୍ରସ୍ଥାନ । )

ବୈଶ୍ୟ ।—ସ୍ୱାମିଙ୍କ ପରି ବିଚକ୍ଷଣ ବେଦଜ୍ଞ ପଣ୍ଡିତ ନ ହେଲେ କି କାର୍ଯ୍ୟ ଚଳେ !—ଆଉ ଦେଖିବ ଆଜ କିପରି ବରକନ୍ୟା ନିଜେ ବେଦମନ୍ତ୍ର ଉଚ୍ଚାରଣ କରି ବିବାହ ବନ୍ଧନରେ ଆବଦ୍ଧ ହେବେ ।

ଶୀଳ ।—ଯାହା କହିଲେ ଯଥାର୍ଥ, ପୂର୍ବେ ତାହାହିଁ ହେଉଥିଲା—ଆଜ ତହିଁରେ ଚକ୍ଷୁ-କର୍ଣ୍ଣ ପ୍ରତ୍ୟକ୍ଷ ହେବ ।

[ ଆଗେ ଆଗେ ବ୍ରହ୍ମାନନ୍ଦ ପଛେ କନ୍ୟାବେଶଧାରିଣୀ ଲୀଳାବତୀର ହାତ ଧରି ସାଧବର ମାତା ଓ ତତ୍ପଶ୍ଚାତ୍ କନକଲତା, ମାଧବୀ, ମାଳତୀ ଓ ରମ୍ଭାର ହୁଳହୁଳୀ ଓ ଶଙ୍ଖଧ୍ୱନିସହ ପ୍ରବେଶ ।

ବ୍ରହ୍ମା ।—ରମ୍ଭେ ! ତୁମ୍ଭେ ଗୋଟିଏ ମଙ୍ଗଳ ଗୀତ ଗାଅ, ସେହିକ୍ଷଣ କନ୍ୟା ବରକୁ ବରଣ କରନ୍ତୁ ।

ଲୀଳା ।— ଯଥାବିଧି ସାଧବଙ୍କୁ ବରଣ କରଣ । )

ମାଧ ଓ ମାଳ ।—( ଶଙ୍ଖ ବଜାଇବା । )

ସାଧବ ମାତା ଓ କନ ।—( ହୁଳହୁଳୀ ପକାଇବା । )

ରମ୍ଭା ।—( ବେହେଲା ସହିତ ଗୀତ । )

ରାଗିଣୀ ଖାମ୍ବାଜ । ତାଳ ଯତି ।
ତ୍ରିଦିବ-ଦୃଷ୍ଟିର ପୁଷ୍ପ ହେଉ ସମ୍ମିଳନେ ।
ଲୀଳାବତୀ-ପରିଣୟ ଆଜ ଶୁଭକ୍ଷଣେ । ହୋଇଲା

ଯେଉଁକି ଅବାଟ ଛାଡ଼ି ବାଟ
ପଡ଼ିବ ସୁଖେ ଅଜାଡ଼ି ନଭ ଲେଉଁକି
ମଉଗଉ ଠିକ ନର ବେଦ-ପାଠେ
ସୁଶିଯା-ମାଣ ଦସାଅ ସକଳ ଘରେ
ପ୍ରଫୁଲ୍ଲ କରମ-ଫୁଲ ଉଦ୍ଦ
ଭକତି-ଦ୍ରୁକତି-ମୂଳ ଦଳଗଉକି,
ଭଲ କାର୍ଯ୍ୟେ ଟାଣ କର ନିଜ ସ୍ତ
ଚକ୍ଷୁଁ ଜଳମିବ ଧନ ସଫଳ
ଅଂଶା ଯେବେ ସୁଧାପାନ ଧର୍ମ-ପ୍ରୀତି

ଯବନିକା ପତନ ।



